ପ୍ରକାଶକ
ଶ୍ରୀ ଜନରଞ୍ଜନ ଦାସ
ଜନ-ପ୍ରକାଶନ
ବଙ୍ଗାଳୀ ସାହି, କଟକ

ପ୍ରଥମ ସଂସ୍କରଣ
୧୯୫୯

ମୂଲ୍ୟ—ଏକଟଙ୍କା ମାତ୍ର

ମୁଦ୍ରାକର
ପଣ୍ଡିତ ଅନସୂୟାପ୍ରସାଦ ପାଠକ
ରାଷ୍ଟ୍ରଭାଷା ସମବାୟ ପ୍ରେସ, କଟକ

# ପ୍ରଗତି-ପଥେ

ସାମାଜିକ ବିବର୍ତ୍ତନର ଇତିହାସ ଆଲୋଚନା କଲେ ଦେଖାଯିବ ଯେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସଭ୍ୟତା ଏବଂ ସଂସ୍କୃତି ସଂଘଟିତ ହୋଇଥାଏ । କୌଣସି ନିର୍ଦ୍ଦିଷ୍ଟ ସଭ୍ୟତା ଓ ସଂସ୍କୃତିର ସମ୍ୟକ ଅଭ୍ୟୁଦୟ ଏବଂ ସାମାଜିକ ବିକାଶର ପୂର୍ବବର୍ତ୍ତୀ ସୋପାନର ସମ୍ପୂର୍ଣ୍ଣ ଅବସାନ ମଧ୍ୟବର୍ତ୍ତୀ ଅବସ୍ଥାନ୍ତର କାଳୀନ ପରିସ୍ଥିତିହିଁ ସର୍ବଦା ବିଭ୍ରାଟସଂକୁଳ ସମସ୍ୟାସମୂହର ସମ୍ମୁଖୀନ ହୋଇଥାଏ । ଅଗ୍ରୋନ୍ମୁଖ ଏବଂ ଉଦାର ତତ୍ତ୍ୱର ଚିନ୍ତାଧାରାଦ୍ୱୟର ସଂଘର୍ଷରେ ଅଭୂତପୂର୍ବ ବାୟୁମଣ୍ଡଳର ସୃଷ୍ଟି ହୋଇଥାଏ । ରକ୍ଷଣବାଦ, ଉଦାରବାଦ ଓ ପ୍ରଗତିବାଦ ପ୍ରଭୃତି ସାମାଜିକ ତଥା ରାଜନୈତିକ ମତବାଦମାନଙ୍କର ଅସଂଯତ ପ୍ରବାହ ପ୍ରଣାଳୀ, ଅଭିବ୍ୟକ୍ତି ଭଙ୍ଗି ଏବଂ ବିଚାରର ଦୃଷ୍ଟିକୋଣ ଲାଗି ମାନବ ସମାଜର ସୌଷ୍ଠବ ଏବଂ ସର୍ବାଙ୍ଗୀନ ଉନ୍ନତି ନାନା ଘାତ ପ୍ରତିଘାତ ପ୍ରାପ୍ତହୁଏ । ଶିକ୍ଷା, ରାଜନୀତି, ଅର୍ଥନୀତି ପ୍ରଭୃତି ନାନା ସାମାଜିକ ଅନୁଷ୍ଠାନ ସଙ୍କଟାପନ୍ନ ଅବସ୍ଥାରେ ପତିତ ହୁଅନ୍ତି । ଚିନ୍ତା ଏବଂ କର୍ମ ମଧ୍ୟରେ ବିଶେଷ ତାରତମ୍ୟ ପରିଲକ୍ଷିତ ହୁଏ । ଆଦର୍ଶ ଏବଂ ଅଭ୍ୟାସ ମଧ୍ୟରେ ଅକଳନୀୟ ପାର୍ଥକ୍ୟ ଅନୁଭବ କରାଯାଏ । ପ୍ରତ୍ୟେକ ବ୍ୟକ୍ତି ସାମାଜିକ ପନ୍ଥା, ଅର୍ଥନୈତିକ ସଂସ୍ଥା ବା ଧର୍ମ-ପଦ୍ଧତି ପ୍ରତି ଅସନ୍ତୁଷ୍ଟ ହେଲେ ମଧ୍ୟ ପରିବର୍ତ୍ତନ ଲାଗି କୌଣସି ମୌଳିକ ଉପାୟର ସୂତ୍ରପାତ ନ କରି ବାହ୍ୟିକ ଭାବେ ନାସ୍ତିବୋଧକ ସମାଲୋଚନାରେ ନିଜକୁ ବ୍ୟସ୍ତ ରଖନ୍ତି । ପ୍ରତ୍ୟେକ ବିଷୟରେ ବାସ୍ତବ-ବୋଧ ବା ଯଥାର୍ଥତାର

ଅବବୋଧର ଅଭାବ ସଙ୍ଗେ ସଙ୍ଗେ ନିଷ୍କ୍ରିୟ ତଥା ନିକୃଷ୍ଟ ମନୋବୃତ୍ତିରେ ଉଦ୍‌ବୁଦ୍ଧ ହୋଇଥିବାରୁ ପ୍ରତିଷ୍ଠିତ ଶାସନତନ୍ତ୍ର ଥିଲେ ମଧ୍ୟ ଶାସକ-ଗୋଷ୍ଠୀର ବ୍ୟକ୍ତି, ବ୍ୟକ୍ତିଗତ ଓ ଆତ୍ମ-କେନ୍ଦ୍ରିକ କର୍ମଯୋଜନା ହେତୁ ଶାସନ ପରିଚାଳନା ଏବଂ ନିୟନ୍ତ୍ରଣରେ ନାନାତ୍ରୁଟି ସଂଘଟିତ ହୋଇଥାଏ । ଫଳତଃ ଜନତାର କଲ୍ୟାଣ ପରିବର୍ତ୍ତେ ଆସିଥାଏ ପ୍ରତିପଗମନ—ପ୍ରଗତି ପରିବର୍ତ୍ତେ ଆସିଥାଏ ନିଷ୍ଫଳତା; ଶୋଷକ ଓ ଶୋଷିତ ମଧ୍ୟରେ ସ୍ପଷ୍ଟ ବ୍ୟବଧାନ ସୃଷ୍ଟି ହୋଇଥାଏ । ଭିନ୍ନ ଭିନ୍ନ ଅର୍ଥନୈତିକ, ସାମାଜିକ ତଥା ରାଜନୈତିକ ଶ୍ରେଣୀ-ମାନଙ୍କ ମଧ୍ୟରେ ପ୍ରଭେଦ, ପାର୍ଥକ୍ୟ ଭେଦର ପରିସର ସୁବିସ୍ତୃତ ହୋଇଥାଏ । ଶ୍ରେଣୀ ସଂକୁଚନ ଫଳରେ ଶ୍ରେଣୀ ଚେତନା, ଶ୍ରେଣୀ ଜାଗରଣ ତଥା ଶ୍ରେଣୀ ସଂଘର୍ଷର ଭିତ୍ତି ସ୍ଥାପିତ ହୁଏ । ଅର୍ଥନୈତିକ ପରିସ୍ଥିତି ସାମାଜିକ ବିକାଶର ଭିତ୍ତି ହୋଇଥିବାରୁ ଦେଶକାଳପାତ୍ର ବିବେଚନାରେ ଏହାକୁ କେନ୍ଦ୍ର କରି ଶିକ୍ଷା, ଧର୍ମ, ରାଜନୀତି ପ୍ରଭୃତି ମାନବିକ ସମସ୍ୟାମାନଙ୍କର ବିସ୍ତୃତ ପରିସର ବିଚାର କରାଯାଏ ।

ସଭ୍ୟତା, ସଂସ୍କୃତି, କଳା ଏବଂ ବିଜ୍ଞାନ ନେଇ ସାମାଜିକ ପରଂପରା ପୁଷ୍ଟ—ସାମାଜିକ ବିକାଶପଥର ନିର୍ଦ୍ଦିଷ୍ଟ ସୋପାନରେ ନିର୍ଦ୍ଦିଷ୍ଟ ପରଂପରା ଥିବା ସ୍ୱତଃ ପରବର୍ତ୍ତୀ ସୋପାନର ପୂର୍ଣ୍ଣାଙ୍ଗ ବିକାଶଲାଗି ପୂର୍ବ ସାମାଜିକ ପରଂପରାର ଅବଦାନ ପ୍ରଭୂତ । ସେଥି-ଲାଗି ପ୍ରତ୍ୟେକ ଯୁଗରେ ପରିବର୍ତ୍ତନ ପ୍ରୟାସୀ ପଥପ୍ରଦର୍ଶକ ଗୋଷ୍ଠୀ ସଂଯୋଗକ ଦୃଷ୍ଟିପଥ ଅନୁସରଣ କରିଥାନ୍ତି । ଉକ୍ତ ସଂଶ୍ଳେଷଣହିଁ ବିଭିନ୍ନ ସାମାଜିକ ସଂସ୍ଥାର ସଂଘର୍ଷରୁ ସମ୍ଭୂତ । ଗୋଟିଏ ଉପସ୍ଥିତ ସାମାଜିକ ଅବସ୍ଥାରେ ବିବ୍ରତ ହୋଇ ତାହାର ସମୂଳ ଅବସାନ ଲାଗି ନିୟନ୍ତ୍ରିତ ଜନତା ସମ୍ପୂର୍ଣ୍ଣ ବିପରୀତ ପନ୍ଥାନୁସରଣ କରିଥାନ୍ତି । ପରିଣାମରେ ନାନା ବିପ୍ଳବ, ସଂଘର୍ଷ ଏବଂ ସମର ଉପୁଜ

ଥାଏ । ଏହିପରି ଅନିଶ୍ଚିତ ଧ୍ୱଂସଳପରିସ୍ଥିତିରେ ପତିତ ହୋଇ ବାସ୍ତବ ମାନବିକତାର ଉପଲବ୍‌ଧି କଲେ ନୂତନ ବାୟୁମଣ୍ଡଳ ସୃଷ୍ଟି ହୋଇଥାଏ । ଏତାଦୃଶ ଚିନ୍ତାଧାରା ପୁରାତନ ବୈଷ୍ଣମ୍ୟ ବାୟୁମଣ୍ଡଳ ତଥା ପରମ୍ପରାରୁ ନାନା ମୂଲ୍ୟବାନ ଉପାଦାନ ଗ୍ରହଣ କରି ନିଜକୁ ପୁଷ୍ଟ କରିଥାଏ । ମାନବ ସମାଜ ଆରମ୍ଭରୁ ପିତୃପ୍ରଧାନ, ମାତୃପ୍ରଧାନ, ଯୋଦ୍ଧୃପ୍ରଧାନ, ରାଜପ୍ରଧାନ ତଥା ଜନପ୍ରଧାନ ସମାଜରେ ବର୍ବର-ସଭ୍ୟତା, ପଶୁପାଳନ-ସଭ୍ୟତା, କୃଷି ସଭ୍ୟତା ଯନ୍ତ୍ର-ସଭ୍ୟତା, ବିଦ୍ୟୁତ୍ ସଭ୍ୟତା ତଥା ଆଜିର ପରମାଣୁ ସଭ୍ୟତା ପର୍ଯ୍ୟନ୍ତ ଏକର ଅଭ୍ୟୁଦୟ ଏବଂ ଅନ୍ୟର ଅବସାନ ମଧ୍ୟବର୍ତ୍ତୀ କାଳର ଗୁରୁତର ଘଟଣା-ରାଜିରେ ବିଶ୍ୱଇତିହାସ ସମୃଦ୍ଧ ।

ଭିନ୍ନ ଭିନ୍ନ ଯୁଗର ସଭ୍ୟତା, ସଂସ୍କୃତି, ସାହିତ୍ୟ, ଇତିହାସ ଏବଂ ସାମାଜିକ ପରମ୍ପରା ପ୍ରଭୃତି ବିଶ୍ଳେଷଣ କଲେ ତତ୍‌କାଳୀନ ସାମାଜିକ କ୍ରିୟାପ୍ରକ୍ରିୟା ଓ ପ୍ରତିକ୍ରିୟାର ସଂଘର୍ଷର ଫଳସ୍ୱରୂପ ପ୍ରାୟଶଃ ସଙ୍କଟକାଳୀନ ଏକଚ୍ଛତ୍ରବାଦ ଏବଂ ଯୁଦ୍ଧ ସଂଘଟିତ ହୋଇଥାଏ । ଯୁଦ୍ଧରେ ଯଦିଓ ଜେତା ଏବଂ ପରାଜିତ ଉଭୟ ନାନା କ୍ଷତିଗ୍ରସ୍ତ ହେବା କଥା ପ୍ରତ୍ୟେକ ବ୍ୟକ୍ତି ଅନୁଭବ କରନ୍ତି ତଥାପି ପ୍ରାଚୀନ କାଳରୁ ଏପର୍ଯ୍ୟନ୍ତ ମାନବ ସମାଜ ଯୁଦ୍ଧ ବିଭୀଷିକାରୁ ମୁକ୍ତ ହୋଇ ପାରିନାହିଁ । ସହସ୍ର ସହସ୍ର ବର୍ଷ ପୂର୍ବେ ଯେତେବେଳେ ପୃଥିବୀର ଭିନ୍ନ ଭିନ୍ନ ଅଞ୍ଚଳର ସମସ୍ୟାସମୂହ ଇତିହାସରେ ଲିପିବଦ୍ଧ ହେବା ଅବସ୍ଥାରେ ନ ଥିଲା, ଯୁଦ୍ଧ ବା ସାମାଜିକ ଶକ୍ତି ପ୍ରୟୋଗର କରାଳ କବଳରୁ ମଧ୍ୟ ତତ୍‌କାଳୀନ ମାନବ ସମାଜ ରକ୍ଷା ପାଇ ନ ଥିଲା । ରାମାୟଣ, ମହାଭାରତ ପ୍ରଭୃତି ନାନାଗ୍ରନ୍ଥ ଯେପରି ଆମ ଦେଶର ପ୍ରାଚୀନ ସାମାଜିକ ପରଂପରାର ଆଭାସ ଦେବା ସଙ୍ଗେ ସଙ୍ଗେ ତତ୍‌କାଳୀନ ରାଜନୀତି, ଧର୍ମ ଏବଂ ନୈତିକତା ବିଷୟରେ ଧାରଣା

ଦେଇଥାନ୍ତି, ସେପରି ଚୀନ୍, ବାବିଲୋନିୟା, ଇଜିପ୍ଟ, ପାରସ୍ୟ, ଗ୍ରୀସ୍ ଏବଂ ରୁଷ ପ୍ରଭୃତି ପ୍ରାଚୀନ ସଭ୍ୟତାର ଚରମ ସୀମା ଆସୀନ ଦେଶମାନଙ୍କର ସାହିତ୍ୟ, କଳା ଏବଂ ସଂସ୍କୃତି ଉକ୍ତ ଦେଶମାନଙ୍କର ତତ୍କାଳୀନ ସାମାଜିକ ପରିସ୍ଥିତିର ପରିଚ୍ୟକ । ପ୍ରାଚୀନ କାଳରେ ଯୁଦ୍ଧର ହେତୁଥିଲା—ବ୍ୟକ୍ତିଗତ ବୀରତ୍ୱର ବୈଶିଷ୍ଟ୍ୟ ପ୍ରତିପାଦନ । ସେଥିଲାଗି ନିଜକୁ ଶ୍ରେଷ୍ଠ ବୀର ବୋଲି ଯେଉଁମାନେ ବିବେଚନା କରୁଥିଲେ, ସେମାନେ ଅନ୍ୟମାନଙ୍କ ଉପରେ ନିଜର ପ୍ରାଧାନ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ସାମାଜିକ ସୁଯୋଗ ପ୍ରଥମେ ନିଜେ ପାଇବା ପାଇଁ ନାନାପ୍ରକାର ଚେଷ୍ଟା କରୁଥିଲେ । ସେତେ-ବେଳକାର ସମାଜରେ ମାନବ ବହୁପରିମାଣରେ ପ୍ରକୃତିପ୍ରବଣ ଥିବାରୁ ନାରୀ-ଲିପ୍‌ସା ସର୍ବଶ୍ରେଷ୍ଠ ସାମାଜିକ ପ୍ରଲୋଭନ ଥିଲା । କୌଣସି ସୁନ୍ଦରୀ ରମଣୀର ସନ୍ଧାନ ପାଇଲେ ନାନା ପନ୍ଥା ଉଦ୍‌ଭାବନପୂର୍ବକ ତାହାର ସୌନ୍ଦର୍ଯ୍ୟ ଉପଭୋଗହିଁ ତତ୍କାଳୀନ ଯୋଦ୍ଧୃବୃନ୍ଦଙ୍କର ଥିଲା ଚରମ ପ୍ରୟାସ-ରାମାୟଣ ସଭ୍ୟତାହିଁ ଏହାର ଏକ ଶ୍ରେଷ୍ଠ ପରିଚ୍ୟକ—କେବଳ ଭାରତରେ ନୁହେଁ; ଗ୍ରୀସ ପ୍ରଭୃତି ଦେଶମାନଙ୍କରେ ମଧ୍ୟ ଟ୍ରୟ ଯୁଦ୍ଧ ଆଦି ଏତାଦୃଶ ଘଟଣାବଳୀର ଅଭାବ ନ ଥିଲା । ଏ ତ ହେଲା ବିଧିବଦ୍ଧ ସମାଜ ପ୍ରତିଷ୍ଠା ପରର କଥା—ଏହା ପୂର୍ବରୁ ନିର୍ଦ୍ଦିଷ୍ଟ ସ୍ଥାନରେ ଜନସଂଖ୍ୟା ଅଧିକ ହେବାରୁ ଖାଦ୍ୟାଭାବ ସୃଷ୍ଟି ହେଲା । ଖାଦ୍ୟାଭାବ ଦୂରକରିବା ପାଇଁ ବିଭିନ୍ନ ସ୍ଥାନରେ ବସତି ସ୍ଥାପନ କରିବାକୁ ହେଲା । ସେଥିଲାଗି ନାନାଦଳ ମଧ୍ୟରେ ସଂଘର୍ଷ ହେଲା । ସଂଘର୍ଷ ଫଳରେ ଏକ ମିଶ୍ରିତ ସାମ୍ରାଜ୍ୟ ସୃଷ୍ଟି-ହେଲା । ଉକ୍ତ ସମାଜରେ ଦୁର୍ବଳ ଏବଂ ସବଳ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ପରିଦୃଷ୍ଟ ହେଲା । ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଲାଗି ସମାଜର ଉଚ୍ଚତର ସୋପାନ-ସ୍ଥିତ-ବ୍ୟକ୍ତି-ସମୂହ ଦୁର୍ବଳ ନିଃସହାୟ ନିମ୍ନସ୍ଥ ଜନତାକୁ

ନିୟୋଜିତ କଲେ । ଏହିପରି ଭାବରେ ବାରମ୍ବାର ବାହ୍ୟ ଶତ୍ରୁ ଦ୍ୱାରା ଆକ୍ରାନ୍ତ ହେବାରୁ ସୀମାବଦ୍ଧ ଜନବସତି ଆତ୍ମରକ୍ଷା ପାଇଁ ସଂଗଠିତ ହେବାକୁ ଲାଗିଲା । ସଂଗଠିତ ସମାଜରେ ନାନା ଅସ୍ତ୍ରଶସ୍ତ୍ରର ବ୍ୟବହାର ମଧ୍ୟ ହେଉଥିଲା । ଏହିପରି ଭାବରେ ଭିନ୍ନ ଭିନ୍ନ ସଂଗଠିତ ସମାଜ ମଧ୍ୟରେ ସଂଘର୍ଷ ଫଳରେ ପ୍ରତ୍ୟେକେ କ୍ଷତିଗ୍ରସ୍ତ ହୋଇ ଏକ ଅନ୍ୟ ସହିତ ବନ୍ଧୁତା ସ୍ଥାପନ କରିବାକୁ ଲାଗିଲେ— ବନ୍ଧୁତାର ସ୍ଥାପନ ମୂଳରେ ବୈବାହିକ ସମ୍ପର୍କହିଁ ବିଦ୍ୟମାନ ।

ଉପରେ ସାମାଜିକ ଚିନ୍ତାଧାରା କ୍ଷମତାଲିପ୍‌ସା ଉଦବୁଦ୍ଧ ହେଲା । ବ୍ୟକ୍ତିଗତ କାୟିକ ଶକ୍ତିସମୃଦ୍ଧ ସମାଜର ଚରମ ସୋପାନ ଆସୀନ ନେତୃବୃନ୍ଦ କ୍ଷମତା-ଲୋଲୁପ ହୋଇ ନିକଟବର୍ତ୍ତୀ ରାଜ୍ୟମାନ ଜୟ କରି ସେମାନଙ୍କ ଉପରେ ନିଜର ପ୍ରାଧାନ୍ୟ ବିସ୍ତାର କରିବାକୁ ଯୁଦ୍ଧାଭିଯାନ କଲେ—ଯେତେ ଦିନ ପର୍ଯ୍ୟନ୍ତ କୌଣସି ପ୍ରାକୃତିକ ଦୁର୍ଘଟଣା ଦ୍ୱାରା ବାଧାପ୍ରାପ୍ତ ବା ପରାଜିତ ହେଉ ନ ଥିଲେ, ସମରଲିପ୍‌ସାରୁ ବିରତ ହେଉ ନ ଥିଲେ । ଆଲେକ୍‌ଜାଣ୍ଡାର, ସିଜର ପ୍ରଭୃତି ପୃଥିବୀବିଖ୍ୟାତ ଯୋଦ୍ଧୃବୃନ୍ଦଙ୍କର କର୍ମଯୋଜନା ଏବଂ କାର୍ଯ୍ୟ-ପ୍ରଣାଳୀ ଏତାଦୃଶ ସାମାଜିକ ପରିସ୍ଥିତିର ପ୍ରାଞ୍ଜଳ ଚିତ୍ରରୂପେ ଚିରଦିନ ଲାଗି ଇତିହାସରେ ଲିପିବଦ୍ଧ ହୋଇଅଛି ।

କାଳକ୍ରମେ କ୍ଷମତାର ଦୃଷ୍ଟିକୋଣ ପରିବର୍ତ୍ତିତ ହେବାକୁ ଲାଗିଲା । ସେତେବେଳେ ବ୍ୟକ୍ତିଗତ ବୀରତ୍ୱ ବା ପ୍ରତିଭାର ପୂଜା ପରିବର୍ତ୍ତେ ସମାଜରେ ବଂଶାନୁକ୍ରମିକ ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା । ରାଜାଙ୍କ ନିକଟରେ ଐଶ୍ୱରିକ ଶକ୍ତି ନିହିତ ବା ରାଜାମାନେ ଈଶ୍ୱରଙ୍କର ପାର୍ଥିବ ପ୍ରତିନିଧି ବୋଲି ଦେଶବାସୀ ବିବେଚନା କଲେ—"ମହତି ଦେବତା ହ୍ୟେଷା ନରରୂପେଣ ତିଷ୍ଠତି" ରାଜା ବା ସମାଜର ଅଧିପତିମାନଙ୍କର ଅଖଣ୍ଡ ପ୍ରଭାବ ଏବଂ ପ୍ରତିପତ୍ତି

ବିରୁଦ୍ଧରେ ମସ୍ତକ ଉତ୍ତୋଳନ କଲେ ପାପ ବା ଧର୍ମଦ୍ରୋହ ହେବ ବୋଲି ବିଚାରିଲେ । ସମାଜପତିଙ୍କ ଶ୍ରେଷ୍ଠ ରାଜନୈତିକ ଏବଂ ଧାର୍ମିକ ଅନୁଷ୍ଠାନ ବୋଲି ସ୍ୱୀକୃତ ହେଲା । ଫଳରେ ଯୋଗ୍ୟତା ନ ଥାଇ ମଧ୍ୟ ବଂଶ-ପରମ୍ପରାକ୍ରମେ ରାଜବଂଶଜମାନେ ରାଜ୍ୟର ଶ୍ରେଷ୍ଠ ଆସନ ଗ୍ରହଣ କଲେ । ସେମାନଙ୍କର ଦୁର୍ବଳତା ସୁଯୋଗ ନେଇ ରାଜ-ପରିଷଦ ନିଜର କ୍ଷମତା ବିସ୍ତାର କରିବାକୁ ଲାଗିଲେ । କେନ୍ଦ୍ରଶାସନର ଅପାରଗତା ଯୋଗୁଁ ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳର ଦାୟିତ୍ୱସମ୍ପନ୍ନ ବ୍ୟକ୍ତିମାନେ ଉକ୍ତ ସ୍ଥାନମାନଙ୍କରେ ନିଜର ଅଖଣ୍ଡ ପ୍ରଭାବ ଦ୍ୱାରା ନିଜକୁ ସାର୍ବଭୌମ ଶକ୍ତିରୂପେ ଘୋଷଣା କଲେ । ସେଥିରୁ ସୃଷ୍ଟି ହେଲା "ଅନ୍ତଃବିପ୍ଳବ"—ରାଜବଂଶ, ରାଜପରିଷଦ, କରଦରାଜ୍ୟ ପ୍ରଭୃତିଙ୍କ ମଧ୍ୟରେ ସଂଘର୍ଷ ଫଳରେ ଦେଶର କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳମାନଙ୍କରେ ନିଜର ପ୍ରାଧାନ୍ୟରକ୍ଷା କରିବାକୁ ଗ୍ରାମପତି, ପ୍ରଗଣାପତି ପ୍ରଭୃତି ନାନା ସ୍ତରର ବ୍ୟକ୍ତି ସ୍ୱାର୍ଥ ସନ୍ନିବେଶିତ ଶୋଷକଗୋଷ୍ଠୀର ସୃଷ୍ଟି ହେଲା । ଏହିପରି ଭାବରେ ନ୍ୟସ୍ତସ୍ୱାର୍ଥ ସାମାଜିକ 'ମଲଙ୍ଗ' ଶ୍ରେଣୀର ସୃଷ୍ଟି ହେଲା । ଯେଉଁମାନେ ସୁଯୋଗ ଏବଂ ସୁବିଧା ପାଇଲେ, ସେମାନେ ନିଜର ପ୍ରାଧାନ୍ୟ ବିସ୍ତାର କରି ଅନ୍ୟମାନଙ୍କୁ ଶୋଷଣ, ଲୁଣ୍ଠନ କରିବାକୁ ଲାଗିଲେ । ସମାଜର ନିମ୍ନସ୍ଥ ଶୋଷିତ ଜନତାଙ୍କୁ ଶୋଷଣରୁ ରକ୍ଷା କରିବା ପାଇଁ କୌଣସି ବ୍ୟକ୍ତି ନ ଥିବାରୁ ବାଧ୍ୟ ହୋଇ ଦୁଃସ୍ଥଦରିଦ୍ର ଅବସ୍ଥାରେ ରହିଲେ । ଏହିପରି ଭାବରେ ନାନା ପ୍ରତିକ୍ରିୟା ସହନଶୀଳତାର ସୀମା ଅତିକ୍ରମ କରିବାରୁ ନାନା ବିପ୍ଳବ ଏବଂ ବିଦ୍ରୋହ ଦେଖାଦେଲା । ଏହି ସମୟରେ ମଧ୍ୟ ନାନା ପୃଷ୍ଠପୋଷକମାନଙ୍କର ନିଜ ଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠା ଲାଗି ଦ୍ୱନ୍ଦ ହେଲା । ଫଳତଃ ଦେଶ ଦେଶ ମଧ୍ୟରେ ସଂଘର୍ଷ ହେଲା । ସମୃଦ୍ଧ ଏବଂ ବଳିଷ୍ଠ ରାଜ୍ୟମାନେ

ପରାଜିତ ରାଜ୍ୟମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିବା ସଙ୍ଗେ ସଙ୍ଗେ ବହୁଳ ଧନସମ୍ପତ୍ତି ବଳପୂର୍ବକ ଅପହରଣ କଲେ । ସ୍ୱତଃ କାମ ନ କରି ଧନୀ ହେବା ମନୋବୃତ୍ତି ଆସିବାରୁ ନିଜ ଦେଶରେ ମଧ୍ୟ ଲୁଣ୍ଠନ ଶୋଷଣତାର ତାଣ୍ଡବ ଚାଲିଲା । ନିରୀହ ଲୋକମାନେ ନାନା ଅତ୍ୟାଚାର, ଅନାଚାର ଏବଂ ବ୍ୟଭିଚାରରୁ ରକ୍ଷା ପାଇବା ପାଇଁ ଦେଶାନ୍ତର ଗମନାଭିଳାଷି ହେଲେ । ଠିକ ଏହି ସମୟକୁ ନାନା ନୂତନ ସ୍ଥାନ ଆବିଷ୍କୃତ ହେବା ସଙ୍ଗେ ସଙ୍ଗେ ବାଣିଜ୍ୟ ବ୍ୟବସାୟର ପରିମାଣ ତଥା ପରିସର ବୃଦ୍ଧି ପାଇବାକୁ ଲାଗିଲା । ନାନା ଯନ୍ତ୍ରପାତିର ଉଦ୍‌ଭାବନ ହେବା ଦ୍ୱାରା ବୈଜ୍ଞାନିକ ବିକାଶ, ବିଶ୍ଳେଷଣ ଏବଂ ଗବେଷଣା ଉତ୍ତରୋତ୍ତର ବୃଦ୍ଧି ପାଇବାକୁ ଲାଗିଲା । ଉନ୍ନତ ଦେଶମାନ ବାଣିଜ୍ୟ ମାଧ୍ୟମରେ ନାନା ଦେଶ ସହିତ ସମ୍ପର୍କ ସ୍ଥାପନ କଲେ । ଉକ୍ତ ଦେଶମାନଙ୍କର ଆଭ୍ୟନ୍ତରୀଣ ଦ୍ୱନ୍ଦ ସଂକୁଳ ପରିସ୍ଥିତିର ସୁଯୋଗ ନେଇ ଉକ୍ତ ସ୍ଥାନମାନଙ୍କରେ ଉପନିବେଶ ସ୍ଥାପନ କରିବାକୁ ଲାଗିଲେ । ନୂତନ ଆବିଷ୍କୃତ ନାନା ବୈଜ୍ଞାନିକ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରି ଦୁର୍ବଳ ଅନ୍ତଃ-କଳହପୂର୍ଣ୍ଣ ଦେଶମାନଙ୍କର ରାଜନୈତିକ ସ୍ୱାଧୀନତା ନେବା ସଙ୍ଗେ ସଙ୍ଗେ ସେମାନଙ୍କର ଅର୍ଥନୈତିକ ସଂସ୍ଥାକୁ ପଙ୍ଗୁ କରି ଶୋଷଣର ଜାଲ ମେଲାଇଦେଲେ । ଅର୍ଥନୈତିକ ସ୍ୱାଧୀନତା ଯିବା ସଙ୍ଗେ ସଙ୍ଗେ ସେମାନଙ୍କର ମାନସିକ ତଥା ନୈତିକ ବଳର ଅବସାନ ହେଲା ଏବଂ ଲୋକମାନେ ଦାସତ୍ୱ ଶୃଙ୍ଖଳରେ ଆବଦ୍ଧ ହେଲେ । ସେମାନଙ୍କର ଶିକ୍ଷା ପଦ୍ଧତି, ସଂସ୍କୃତି ତଥା ଅନ୍ୟାନ୍ୟ ପ୍ରଭାବଶାଳୀ ସାମାଜିକ ଅନୁଷ୍ଠାନମାନଙ୍କରେ ଶାସକଗୋଷ୍ଠୀର ସୁବିଧା ଦୃଷ୍ଟିରୁ ନାନା ପରିବର୍ତ୍ତନ ସଂଘଟିତ ହେଲା । ଭୌଗୋଳିକ ଆବିଷ୍କାର ଦ୍ୱାରା ନୂତନ ସ୍ଥାନମାନଙ୍କରୁ ନାନା ଖଣିଜ ଦ୍ରବ୍ୟ ଉତ୍ପାଦନ କରାଯିବାରୁ

ଏବଂ ବୈଜ୍ଞାନିକ ଉଦ୍‌ଭାବନଦ୍ୱାରା ନାନା ଯନ୍ତ୍ରପାତି ସୃଷ୍ଟି ହେବାରୁ ସମୟ ଏବଂ ଦୂରତା ମନୁଷ୍ୟର ସାଧ୍ୟାୟତ୍ତ ହୋଇଗଲେ । ସମୃଦ୍ଧ ଓ ଉନ୍ନତ ଦେଶମାନେ ଅନୁନ୍ନତ ଦରିଦ୍ର ଦେଶମାନଙ୍କୁ ବାଣିଜ୍ୟ ବଜାର କରିବାକୁ ଲାଗିଲେ । ଯେଉଁ ଦେଶ ଅଧୀନରେ ଯେତେ ପରାଧୀନ ରାଜ୍ୟ ରହିଲେ, ସେ ଦେଶର ଶିଳ୍ପ ସେତେ ବିସ୍ତାର ଲାଭ କଲା । ବ୍ୟବସାୟରେ ବିଶେଷ ଲାଭବାନ୍ ହେବାରୁ ଲୋକେ ଜୀବନ-ଯାପନର ଭିନ୍ନ ଭିନ୍ନ ପନ୍ଥା ପରିତ୍ୟାଗ କରି ଶିଳ୍ପକାର୍ଯ୍ୟରେ ବ୍ୟସ୍ତ ରହିଲେ । କାଳକ୍ରମେ ଶିଳ୍ପ ସାମାଜିକ ପ୍ରାଧାନ୍ୟ ଲାଭକଲା । ଶିଳ୍ପ ପ୍ରତି ଲୋକମାନେ ବେଶୀ ଆକୃଷ୍ଟ ହେଲେ । ବାଣିଜ୍ୟ-କ୍ଷେତ୍ରରେ ପ୍ରତିଯୋଗିତା ଆସିଲା । ଅନ୍ୟକୁ ଦବାଇ ନିଜେ ଧନୀ ହେବାର ମନୋବୃତ୍ତି ଉପୁଜିଲା । ଫଳରେ ବହୁଳ ଧନ ଥିବା ଲୋକମାନେ ଅଧିକ ଲାଭବାନ ହେବାକୁ ଲାଗିଲେ । ଲାଭ ବୃଦ୍ଧି ପାଇବାରୁ ଶ୍ରମିକମାନଙ୍କର ବାସ୍ତବ ମଜୁରୀ ଦର ଶିଳ୍ପପତିମାନେ ହ୍ରାସ କରିବାକୁ ଲାଗିଲେ । ଫଳରେ ଶ୍ରମିକ ତଥା ମାଲିକମାନଙ୍କ ମଧ୍ୟରେ ସଂଘର୍ଷ ଲାଗିଲା । ଧନୀକ ବା ପୁଞ୍ଜିପତିମାନେ ବହୁତ ପ୍ରଭାବଶାଳୀ ହୋଇଥିବାରୁ ରାଜା ଥିଲେ ମଧ୍ୟ ସେମାନଙ୍କର କ୍ଷମତା ଯଥେଷ୍ଟ ବଢ଼ିଯାଇଥିଲା । ରାଜା ସେମାନଙ୍କର କ୍ରୀଡ଼ା-ପୁତ୍ତଳିକା ପରି ଥିଲେ । ସାମାଜିକ ପାର୍ଥକ୍ୟ ହେତୁ ଦରିଦ୍ର ନିର୍ଯ୍ୟାତିତ ଜନତା ଶିଳ୍ପ ଉନ୍ନତିରୁ ମଧ୍ୟ ବିଶେଷ ଲାଭବାନ ହୋଇପାରିଲା ନାହିଁ । ଠିକ୍ ଏହି ସମୟରେ ମାର୍କସ, ଏନ୍ ଜେଲସ୍, ଲିଏନ୍ ପ୍ରଭୃତି ନାନା ବୈପ୍ଳବିକ ମନୋବୃତ୍ତିସମ୍ପନ୍ନ ସାମାଜିକ ଭାବୁକ ଜନ୍ମଗ୍ରହଣ କରି ଶୋଷିତ ଜନତାକୁ ଚିର ଅତ୍ୟାଚାରରୁ ମୁକ୍ତ କରିବା ପାଇଁ ନାନା ପ୍ରଚେଷ୍ଟା କଲେ । ଦୁଃସ୍ଥ ଶ୍ରମିକ, ଶୋଷିତ କୃଷକ ଏବଂ ଅତ୍ୟାଚାରିତ ନିମ୍ନ ମଧ୍ୟବିତ୍ତ ପ୍ରକୃତ ଶୋଷକ ଶ୍ରେଣୀର ସନ୍ଧାନ ପାଇ ସେମାନଙ୍କ

ବିରୁଦ୍ଧରେ ବିପ୍ଳବ-କେତନ ଉତ୍ତୋଳନ କରିବା ପାଇଁ ସଂଗଠିତ ହେବା ପୂର୍ବରୁ ସୃଷ୍ଟି ହେଲା ଏକ ଅଭିନବ ତାଣ୍ଡବ । ସେତେବେଳକୁ ପୃଥିବୀର ଭିନ୍ନ ଭିନ୍ନ ଦେଶମାନଙ୍କ ମଧ୍ୟରେ ବାଣିଜ୍ୟ ଚଳୁଥିବାରୁ ଆନ୍ତର୍ଜାତିକ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ପ୍ରତିଯୋଗିତା ଚଳିଲା । ଫଳରେ ପୂର୍ବରୁ ସୁବିଧାଜନକ ପରିସ୍ଥିତିରେ ଥିବା ଇଂଲଣ୍ଡ, ଫ୍ରାନ୍ସ ପ୍ରଭୃତି ଦେଶମାନଙ୍କର ବାଣିଜ୍ୟିକ ଉନ୍ନତି ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଲା । ସେମାନଙ୍କ ଉପନିବେଶ ଏବଂ ଅଧୀନସ୍ଥ ଦେଶମାନଙ୍କରେ ସେମାନଙ୍କର ଶିଳ୍ପଜାତ ଦ୍ରବ୍ୟ ଅତି ସହଜରେ ବିକ୍ରୀ ହୋଇପାରିଲା । ଅନ୍ୟାନ୍ୟ ଶିଳ୍ପପ୍ରଧାନ ଦେଶମାନେ ଉତ୍ତମ ପଦାର୍ଥ ଉତ୍ପାଦନ କଲେହେଁ, ସେମାନଙ୍କର ଅପେକ୍ଷାକୃତ ଉତ୍ତମ ଶିଳ୍ପଜାତ ପଦାର୍ଥମାନ ଭିନ୍ନ ଭିନ୍ନ ଦେଶମାନଙ୍କରେ ଆଦୃତ ହେଲେହେଁ, ସର୍ବଦା ବିକ୍ରୟ ବଜାରର ଅଭାବ ରହିବାରୁ ସେମାନେ ବିବ୍ରତ ହେବାକୁ ଲାଗିଲେ । ଇଂଲଣ୍ଡ ଏବଂ ଫ୍ରାନ୍ସ ପ୍ରଭୃତି ଦେଶମାନେ ସେମାନଙ୍କର ଉପନିବେଶ ବା ଅଧୀନସ୍ଥ ରାଜ୍ୟମାନଙ୍କର ବାଣିଜ୍ୟ ନୀତିନିୟନ୍ତ୍ରଣ କରୁଥିବାରୁ ଜର୍ମାନ ପ୍ରଭୃତି ଦେଶମାନଙ୍କର ବାଣିଜ୍ୟ ବୃଦ୍ଧିରେ ନାନା କଣ୍ଟକଣା ରହୁଥିଲା । ମୁକ୍ତ ବିକ୍ରୟ ବଜାର ଅଭାବରେ ଶିଳ୍ପପ୍ରସାର ଅସମ୍ଭବ ଜାଣି ଜର୍ମାନ ଦେଶର ଶିଳ୍ପପତି-ମାନେ ତାଙ୍କର ଶୋଷକଗୋଷ୍ଠୀକୁ ପ୍ରଭାବିତ କରି ସାମରିକ ଶକ୍ତି ବୃଦ୍ଧି କରିବାକୁ ଲାଗିଲେ । ବାଣିଜ୍ୟ ବଜାର ଲାଭ ସେମାନଙ୍କ ଲକ୍ଷ୍ୟ ହେତୁ ଉକ୍ତ ରାଜ୍ୟମାନଙ୍କ ସହିତ ଯୁଦ୍ଧରେ ବ୍ୟାକୁଳ ହେଲେ । ଅନ୍ୟାନ୍ୟ ଦେଶମାନଙ୍କ ମଧ୍ୟରୁ ଯେଉଁମାନଙ୍କର ସ୍ୱାର୍ଥ ଯାହା ସହିତ ବିଶେଷ ଭାବେ ସନ୍ନିବେଶିତ ଥିଲା, ତାହାର ପକ୍ଷ ନେଲେ । ଫଳରେ ପୃଥିବୀବ୍ୟାପୀ ପ୍ରଥମ ମହାସମର ସୃଷ୍ଟି ହେଲା । ସେତେବେଳେ ଇଂଲଣ୍ଡ ଏବଂ ଫ୍ରାନ୍ସ ପ୍ରଭୃତି ଦେଶମାନଙ୍କର ପୃଥିବୀର ଅଧିକାଂଶ

ସ୍ଥାନରେ ଆଧିପତ୍ୟ ଥିବାରୁ ଭିନ୍ନ ଭିନ୍ନ ଦେଶରୁ ସୈନ୍ୟ, ଯୁଦ୍ଧ-ସରଞ୍ଜାମ ଏବଂ ଖାଦ୍ୟ ଦ୍ରବ୍ୟ ପାଇଲେ । କିନ୍ତୁ ଜର୍ମାନୀ ସୈନିକ-ମାନେ ଉଚ୍ଚଧରଣର ଯୋଦ୍ଧା ହୋଇଥିଲେ ମଧ୍ୟ ଏବଂ ସେମାନଙ୍କର ଅସ୍ତ୍ରଶସ୍ତ୍ର ଉନ୍ନତ ଧରଣର ହୋଇଥିଲେ ସୁଦ୍ଧା ନିର୍ଦ୍ଦିଷ୍ଟ ଯୋଗାଣ ପରିସର ହେତୁ ଶେଷରେ ସେମାନଙ୍କର ପରାଜୟ ହେଲା । ଯୁଦ୍ଧରେ ଉଭୟ ପକ୍ଷ କ୍ଷତିଗ୍ରସ୍ତ ହୋଇଥିଲେ ସତ୍ୟ; କିନ୍ତୁ ଇଂଲଣ୍ଡ ଅଧୀନରେ ଭାରତ, ଆଫ୍ରିକା, ଅଷ୍ଟ୍ରେଲିଆ ପ୍ରଭୃତି ରାଜ୍ୟମାନ ଥିବାରୁ ଏବଂ ଆମେରିକା ପରି ସୁହୃଦ ଦେଶ ଥିବାରୁ ସମସ୍ତ କ୍ଷତି ଅଳ୍ପ ସମୟ ମଧ୍ୟରେ ପୂର୍ଣ୍ଣ ହୋଇପାରିଥିଲା । କିନ୍ତୁ ଜର୍ମାନର ସମ୍ପର୍କ ପରିସର ନିର୍ଦ୍ଦିଷ୍ଟ ହୋଇଥିବାରୁ ଏବଂ ପରାଜିତ ରାଜ୍ୟ ବୋଲି ତାହାଠାରୁ ବହୁପରିମାଣରେ ଯୁଦ୍ଧ କ୍ଷତିପୂରଣ ଆଣିଥିବାରୁ ଏହାର ଅର୍ଥନୈତିକ ପରିସ୍ଥିତି ଅତ୍ୟନ୍ତ ଶୋଚନୀୟ ହୋଇଯାଇଥିଲା । ପୃଥିବୀ-ବ୍ୟାପି ମହାସମରରେ ସମଗ୍ର ମାନବ ସମାଜ ପ୍ରଭାବିତ ହୋଇଥିଲା । ସାମାଜିକ ଚିନ୍ତାଧାରା ପରିବର୍ତ୍ତିତ ହୋଇଥିଲା । ପୁଂଜିବାଦ ତଥା ଶ୍ରେଣୀଶାସକ ବିଷୟରେ ଲୋକମାନଙ୍କର ସାମୟିକ ଧାରଣା ଉପୁଜିଥିଲା । ଶାସନତନ୍ତ୍ରରେ ଭାଗ ନେବାପାଇଁ ଜନସାଧାରଣଙ୍କର ରାଜନୈତିକ ଚେତନା ଆସିଥିଲା । ଗଣତନ୍ତ୍ର ବା ଜନତନ୍ତ୍ର ପ୍ରତିଷ୍ଠା ପ୍ରୟାସରେ ଭିନ୍ନ ଭିନ୍ନ ଦେଶରେ ଶିକ୍ଷିତ ସମାଜ ଉଦ୍‌ବୁଦ୍ଧ ହୋଇଥିଲେ । ଭିନ୍ନ ଭିନ୍ନ ଦେଶରେ ସ୍ଥାନୀୟ ବାୟୁମଣ୍ଡଳ ଏବଂ ପରିସ୍ଥିତି ନେଇ ସମୟ ବିବେଚନାରେ ନାନା ଆନ୍ଦୋଳନ ପ୍ରତି-ଆନ୍ଦୋଳନ ହୋଇଥିଲା । ସାମ୍ୟବାଦ ଏବଂ ପୁଂଜିବାଦ ମଧ୍ୟରେ ତାରତମ୍ୟର ଧାରଣା ଲୋକେ କରି ପାରୁଥିଲେ । ରକ୍ଷଣଶୀଳ ଓ ପ୍ରଗତିଶୀଳ ଚିନ୍ତାଧାରା ମଧ୍ୟରେ ସଂଘର୍ଷ ସୃଷ୍ଟି ହେଲା । ଭିନ୍ନ ଭିନ୍ନ ଦେଶର ଶୋଷିତ ଜନତା ନିଜକୁ ସଂଗଠିତ କରି ଏକ ଆନ୍ତର୍ଜାତିକ

ଅନୁଷ୍ଠାନ କରିବାକୁ ଲାଗିଲେ । ସେହି ଦେଶମାନଙ୍କର ଶାସକଶ୍ରେଣୀ ଏଥିରେ ନାନା ବାଧାବିଘ୍ନ ଉପସ୍ଥାପିତ କଲେ । ପ୍ରାୟ ପ୍ରତ୍ୟେକ ସ୍ୱାଧୀନ ଦେଶ ଏହିପରି ଆଭ୍ୟନ୍ତରୀଣ ସଂଘର୍ଷର ସମ୍ମୁଖୀନ ହେଲେ । ଫଳରେ କେତେକ ଦେଶରେ ଲୋକପ୍ରତିନିଧି ଶାସନ ପ୍ରଚଳିତ ହେଉ ବୋଲି ଶାସକଗୋଷ୍ଠୀ ସମ୍ମତି ପ୍ରଦାନ କଲେ । ନିର୍ଦ୍ଦିଷ୍ଟ ନିର୍ବାଚକ ମଣ୍ଡଳୀଦ୍ୱାରା ନିର୍ବାଚିତ ହେଉଥିବାରୁ ନ୍ୟସ୍ତ-ସ୍ୱାର୍ଥ ଧନିକ ଶ୍ରେଣୀ ଅର୍ଦ୍ଧଜାଗ୍ରତ ବା ଅଜାଗ୍ରତ ନିର୍ବାଚକମାନଙ୍କୁ ନାନା ଭାବରେ ପ୍ରଭାବିତ କରି ନିର୍ବାଚିତ ହୋଇଥିଲେ । ପୂର୍ବରୁ ଏକଛତ୍ରବାଦୀ ଶାସକମାନଙ୍କ ଭ୍ରମାତ୍ମକ ନିର୍ଦ୍ଦେଶଦ୍ୱାରା ନାନା କ୍ଷତି-ଗ୍ରସ୍ତ ହୋଇଥିବା ଆଳ ନେଇ ଯେଉଁ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଜନଜାଗରଣ ତଥା ଜନଆନ୍ଦୋଳନରେ ନେତୃତ୍ୱ ନେଇଥିଲେ, ସେମାନେ ସହଜରେ ଶାସନ ଗାଦିରେ ଅଧିଷ୍ଠିତ ହେବାରୁ ଆତ୍ମ-ପ୍ରାଧାନ୍ୟ ଏବଂ ଗରିମା ପ୍ରତିଷ୍ଠା କରିବାକୁ ନାନା ଜନକଲ୍ୟାଣ-ବିରୁଦ୍ଧ ଉପାୟମାନ ସୃଷ୍ଟି କରିଥିଲେ । ସମାଜରେ ସ୍ୱତଃ ପ୍ରତିକ୍ରିୟା ସୃଷ୍ଟି ହେଲା । ଯେଉଁ ଦେଶରେ ସାମାଜିକ ପ୍ରତିକ୍ରିୟାର ପରିମାଣ ଯେତେ ହେଲା, ସେ ଦେଶର ଜନତା ସେତେ ସଂଘବଦ୍ଧ ଏବଂ ସଂଗଠିତ ହେଲେ;ସେ ଦେଶରେ ଆନ୍ଦୋଳନ ସେତିକି ତୀବ୍ର ହେଲା । ପକ୍ଷାନ୍ତରେ ଶାସକ ଶକ୍ତିଯୁକ୍ତ ଶୋଷକ ସମାଜ ପ୍ରତି ଆନ୍ଦୋଳନ ସୃଷ୍ଟି କରି ସର୍ବହରା ଆନ୍ଦୋଳନ ଅଗ୍ରଗତି ପଥରେ ନାନା ଅନ୍ତରାୟ ଅବସ୍ଥାପନ କଲେ । ରୁଷ ଦେଶରେ ଏହି ସମୟରେ ନାନା ପାରି-ପାର୍ଶ୍ୱିକ ଅବସ୍ଥା ପରିପକ୍ୱ ହୋଇ ତୁମୁଳ ଜନ-ଆନ୍ଦୋଳନ ସୃଷ୍ଟି କଲା । ରାଜତନ୍ତ୍ର ଶାସନର ଅବସାନ ପରେ ପରେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଶାସନ ଦେଶର ରାଜନୈତିକ ଏବଂ ଅର୍ଥନୈତିକ ବାୟୁମଣ୍ଡଳକୁ ଏପରି ଭାବରେ ଦୂଷିତ କଲା ଯେ, ସର୍ବହରା

ଆନ୍ଦୋଳନର ଅଗ୍ରଗତି କ୍ଷିପ୍ରତର ହେଲା । ଲେନିନ୍ ପ୍ରଭୃତି ସୁଯୋଗ୍ୟ ନେତୃବୃନ୍ଦଙ୍କର ନିର୍ଦ୍ଦେଶରେ ଶାସନତନ୍ତ୍ର ସର୍ବହରା ପ୍ରତିନିଧିମାନଙ୍କ ଦ୍ୱାରା ପରିଚାଳିତ ହେଲା । ସାମ୍ୟବାଦ ଶାସନ ପରୀକ୍ଷାର ଏହା ହେଲା ପ୍ରଥମ ଏବଂ ପ୍ରକୋଷ୍ଠ ପୀଠ । ପୁଞ୍ଜିବାଦର ସର୍ବଗ୍ରାସୀ ଶକ୍ତି ହେଲା ଏହାର ପରମଶତ୍ରୁ । ଦେଶର ସମସ୍ତ ପୁଞ୍ଜିପତିଙ୍କର ବ୍ୟକ୍ତିଗତଧନ, ସମ୍ପଦ ଦେଶ ବା ସମାଜର ବୋଲି ଘୋଷିତ ହେଲା । ସାଧାରଣ ଲୋକେ ଜୀବନ ନିର୍ବାହ ପଥରେ ସମାନ ସୁଯୋଗ, ସୁବିଧା ଏବଂ ଅଧିକାର ପାଇଲେ । ଦେଶରୁ ଅର୍ଥନୈତିକ ଦୁରବସ୍ଥା ଦୂର କରିବା ସର୍ବହରା ନେତାମାନଙ୍କର ହେଲା ପ୍ରଥମ ଏବଂ ପ୍ରଧାନ ଉଦ୍ଦେଶ୍ୟ । ଦେଶର ଉତ୍ପାଦିକା ଶକ୍ତିର କ୍ଷିପ୍ର ବିକାଶ ସଙ୍ଗେ ସଙ୍ଗେ ଦେଶ ଶିଳ୍ପସମୃଦ୍ଧ ହେବାକୁ ଲାଗିଲା । ଉନ୍ନତଧରଣର କୃଷି ହେତୁ ବହୁପରିମାଣରେ ଖାଦ୍ୟଶସ୍ୟ ଉତ୍ପାଦିତ ହେଲା । ପ୍ରତ୍ୟେକ ଲୋକର ରାଜନୈତିକ ଅବବୋଧ ଆସିଲା । ନେତାର ଏକ ନିର୍ଦ୍ଦିଷ୍ଟ ଅଙ୍ଗ ବୋଲି ପ୍ରତ୍ୟେକ ଲୋକ ନିଜକୁ ଭାବିଲେ । ଦେଶର କୌଣସି ଜନସୃଷ୍ଟ ତାରତମ୍ୟ ବା ପାର୍ଥକ୍ୟ ନ ରହିବାରୁ ଅସନ୍ତୋଷ ସ୍ୱତଃ ଅପସାରିତ ହେଲା । ଜନ-ସାଧାରଣଙ୍କର ନିଷ୍ଠାପର କର୍ତ୍ତବ୍ୟ ସାଧନ ଲାଗି ଆନନ୍ଦ, ଉତ୍ସାହ ଏବଂ ଅନୁପ୍ରାଣତା ଆସିଲା । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି ପ୍ରଭୃତି ନୂତନ ବାୟୁମଣ୍ଡଳରେ ରୂପାନ୍ତର ଗ୍ରହଣ କରି ଉତ୍ତରୋତ୍ତର ଉନ୍ନତି ଲାଭ କଲେ । ଶିକ୍ଷା ବିଶେଷ ପ୍ରସାର ଲାଭ କଲା । ଶିକ୍ଷାର୍ଥୀମାନେ ନିଜ ସ୍ପୃହା ଅନୁଯାୟୀ ଶିକ୍ଷା ପାଇବାର ସୁଯୋଗ ଲାଭ କଲାରୁ ମୌଳିକତା ବିକାଶ ଲାଗି ପଥ ସୁଗମ ହେଲା । ଫଳରେ ଅତି ଉଚ୍ଚଧରଣର ବୈଜ୍ଞାନିକ, ସାହିତ୍ୟିକ, ଅର୍ଥନୀତିଜ୍ଞ ପ୍ରଭୃତି ଦେଖାଗଲେ । ଧନତନ୍ତ୍ର ସମାଜର ସାମୂହିକ ବିବର୍ତ୍ତନ

ଏବଂ ଜନତନ୍ତ୍ର ବା ସମାଜତନ୍ତ୍ର ସମାଜର ପ୍ରଚଳନ ଫଳରେ ପରିସ୍ଥିତି, ବାୟୁମଣ୍ଡଳ ଏବଂ ସାମାଜିକ ଦୃଷ୍ଟିକୋଣରେ ନାନା ପରିବର୍ତ୍ତନ ଦେଖା ଦେଲା । ମୁକ୍ତ, ଜାଗ୍ରତ ଭିତ୍ତି ଉପରେ ମନୁଷ୍ୟର ମନସ୍ତତ୍ତ୍ୱର ଧାରା ପରିବର୍ତ୍ତନ ହେଲା । ସମାଜର ବାସ୍ତବ ମାନବିକତାର ପ୍ରାଧାନ୍ୟ ରହିଲା । ମୁଦ୍ରା ବା ଧନ କୈନ୍ଦ୍ରିକ ସମାଜର ବିନାଶ ଏବଂ ବାସ୍ତବବୋଧ କୈନ୍ଦ୍ରିକ ସମାଜର ପ୍ରତିଷ୍ଠାନ । ପୃଥିବୀର ସମସ୍ତ ପୁଂଜିବାଦ ରାଷ୍ଟ୍ରଙ୍କ ପ୍ରାଣରେ ଅବସାଦ ଦେଲା । ଉକ୍ତ ନେତାମାନଙ୍କର ଧନିକ ଶାସକଗୋଷ୍ଠୀ, ନୂତନ ସମାଜ ଏବଂ ମାନବିକ ଦୃଷ୍ଟିକୋଣରୁ ଏହାର ପରିଚାଳନା ଅବଲୋକନରେ ସଙ୍କିତ ହେବାକୁ ଲାଗିଲା । ସେମାନେ ଭାବିଲେ ସେମାନଙ୍କ ନିଜ ଦେଶର ଶୋଷିତ ଜନତା ଏହିପରି ଜୀବନ୍ତ ସମାଜ ସୃଷ୍ଟି କରିବାପାଇଁ ଏକତ୍ରିତ ହେବେ ଏବଂ ରୁଷ ଦେଶର କୌଣସି ସାହାଯ୍ୟ ବା ସହାନୁଭୂତି ପାଇଲେ ବିଦ୍ରୋହ ବିପ୍ଳବର ଝଡ଼ ଝଞ୍ଜା ସୃଷ୍ଟି କରି ସେମାନଙ୍କର ଧ୍ୱଂସ ସାଧନ କରିବେ । ଏହି ଧାରଣା ନେଇ ସେମାନେ ବିକଳରେ ଉକ୍ତ ଚିନ୍ତାଧାରାର ପ୍ରତିରୋଧ ଲାଗି ଉପାୟାନ୍ତରମାନ ଉଦ୍‌ଭାବନ କରିବାରେ ବ୍ୟସ୍ତ ଏବଂ ବିବ୍ରତ ରହିଲେ । ଧନତନ୍ତ୍ର ସମାଜର ତୀବ୍ର କଷାଘାତରେ ନିର୍ଯ୍ୟାତିତ ଅଶିକ୍ଷିତ ଏବଂ ଅଜାଗ୍ରତ ଜନତାକୁ ପ୍ରତାରିତ କରିବା ପାଇଁ ଗଣତନ୍ତ୍ର ଶାସନର ଦୋହି ଦେଇ ଆତ୍ମ-ପ୍ରତିଷ୍ଠା ପ୍ରୟାସରେ ଶାସନ ତନ୍ତ୍ରକୁ ପରିଚାଳିତ କଲେ । ଫଳରେ ଭିନ୍ନ ଭିନ୍ନ ଦେଶରେ ନାନାପ୍ରକାର ରାଜନୈତିକ ମତବାଦର ସୃଷ୍ଟି ହେଲା । ଭିନ୍ନ ଭିନ୍ନ ଦେଶର ସଦା ସୁବିଧା ବାଦୀ, ଶିକ୍ଷିତ ମଧ୍ୟବିତ୍ତମାନେ ଶାସନ ହାତକୁ ନେବାକୁ ନାନାପ୍ରକାର ଉପାୟ ଅବଲମ୍ବନ କଲେ । ଅବସ୍ଥାପକ ଗଣତନ୍ତ୍ର, ପ୍ରଜାତନ୍ତ୍ର, ଗଣତାନ୍ତ୍ରିକ, ସାମ୍ୟବାଦ, ସମାଜବାଦ, ବୈଧାନିକ ଏକାଧିପତି ବା ଏକଛତ୍ରବାଦ

ଏବଂ ସର୍ବହରା ଅଧିନାୟକତ୍ୱ ପ୍ରଭୃତି ବହୁ ପାର୍ଥକ୍ୟ ଏବଂ ଅଳ୍ପ ପାର୍ଥକ୍ୟ ସମ୍ବଳିତ ରାଜନୈତିକ ମତ ନାନା ମତବାଦର ସୃଷ୍ଟି ହେଲା । ଋଷ ଦେଶରେ ସାମ୍ୟବାଦ ପ୍ରତିଷ୍ଠା ଲକ୍ଷ୍ୟ ନେଇ ଅବସ୍ଥାନ୍ତର କାଳୀନ ସର୍ବହରା ଅଧିନାୟକତ୍ୱ ପ୍ରଚଳିତ ହେଲା । ସମଗ୍ର ଦେଶ, ଜନତା ଭବିଷ୍ୟତ ବଂଶାନୁକ୍ରମେ ଯେପରି ସୁଖ-ସ୍ୱାଚ୍ଛନ୍ଦ୍ୟରେ ଜୀବନ ଯାପନ କରି ପାରିବେ, ସେହି ଆଦର୍ଶ ନେଇ ସେ ଦେଶର ନେତୃବୃନ୍ଦ ଅର୍ଥନୈତିକ ସମୃଦ୍ଧି ପାଇଁ ନାନା ସୁଚିନ୍ତିତ ଏବଂ ନିର୍ଦ୍ଦିଷ୍ଟ ଯୋଜନା ପ୍ରସ୍ତୁତ କଲେ । ଉକ୍ତ ଯୋଜନାମାନଙ୍କୁ କାର୍ଯ୍ୟକାରୀ କରିବା ସମୟରେ ଯେଉଁ ନ୍ୟସ୍ତସ୍ୱାର୍ଥ ଆତ୍ମକୈନ୍ଦ୍ରିକ ବ୍ୟକ୍ତି ସମୂହ ଏହାର ପ୍ରତିରୋଧ କରିବା ଉଦ୍ଦେଶ୍ୟରେ ପ୍ରତିଆନ୍ଦୋଳନ ସୃଷ୍ଟି କଲେ, ସେମାନଙ୍କୁ ଅତି କର୍କଶ ଏବଂ କଠୋର ଦଣ୍ଡ ଦେବା ସମୂହ ସ୍ୱାର୍ଥଦୃଷ୍ଟିରୁ ଏକାନ୍ତ ଆବଶ୍ୟକ ହୋଇ ପଡ଼ିଲା । କେତେକ ସ୍ଥଳରେ ପ୍ରାଣଦଣ୍ଡ ଯୁକ୍ତିଯୁକ୍ତ ବୋଲି ବିଚାର ଦ୍ୱାରା ସ୍ୱୀକୃତ ହୋଇ ଦିଆଯାଉଥିଲା । ଏପରି କଠୋରତା ମୂଳରେ ଏକ ଗୁରୁତର ଆଶଙ୍କା ସର୍ବଦା ସଜୀବ ଥିଲା । ପୃଥିବୀର ଅନ୍ୟ ସମସ୍ତ ଦେଶର ଶାସନତନ୍ତ୍ର, ପୁଞ୍ଜିପତି ଏବଂ ନ୍ୟସ୍ତସ୍ୱାର୍ଥଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ସେମାନଙ୍କ କୁଟିଳ ଚକ୍ରାନ୍ତ ଏବଂ କରାଳଗ୍ରାସ ପିପାସାର ଅମାନୁଷିକ ଧ୍ୱଂସ କଟାକ୍ଷରୁ ଶିଶୁ ସନ୍ତାନଟିକୁ ବଞ୍ଚାଇ ରଖିବାକୁ ଆଭ୍ୟନ୍ତରୀଣ ପରିସ୍ଥିତିକୁ ଅତି ଦୃଢ଼ କରିବା ଉଦ୍ଦେଶ୍ୟରେ ଏକ ଦେଶରେ ସାମ୍ୟବାଦ ଧାରଣାରେ ସେ ଦେଶର ନେତୃବୃନ୍ଦ ଉଦ୍‌ବୁଦ୍ଧ ହୋଇଥିଲେ । ସେଥିଲାଗି ପୃଥିବୀର ରାଜନୈତିକ ପରିସ୍ଥିତି ତାଙ୍କର ଅଭିମୁଖରେ ପ୍ରତିକୂଳ ହୋଇଥିଲା । ସେ ସମୟରେ ମାର୍କସ-ବାଦରେ ଅନୁପ୍ରାଣିତ ହୋଇ ଜର୍ମାନ ଦେଶର ଗଣତାନ୍ତ୍ରିକ ସାମ୍ୟବାଦ ପ୍ରତିଷ୍ଠା ପ୍ରଚେଷ୍ଟା ବ୍ୟର୍ଥତାରେ ପରିଣତ ହେବାପରେ

ଉକ୍ତ ଦେଶରେ ହିଟ୍‌ଲର ଏବଂ ତାଙ୍କର ପରିପନ୍ଥିବର୍ଗ ଆନ୍ତର୍ଜାତିକ ଏବଂ ସାମ୍ୟବାଦ ବିରୁଦ୍ଧରେ 'ନାଜିବାଦ' ନାମକ ଏକ ପ୍ରତିକ୍ରିୟା-ଶୀଳ ରାଜନୈତିକ ମତବାଦ ସୃଷ୍ଟି କଲେ । ସେ ଦେଶରେ ଉକ୍ତ ମତବାଦ କ୍ଷିପ୍ର ଗତିରେ ପ୍ରସାର ଲାଭ କରିବାକୁ ଲାଗିଲା, କାରଣ ଜନ-ମନସ୍ତତ୍ତ୍ୱ-ପ୍ରବୀଣ ନେତାମାନେ ପୃଥିବୀରେ ଅନ୍ୟାନ୍ୟ ଜାତିମାନଙ୍କ ଅପେକ୍ଷା ନିଜ ଜାତିର ଉତ୍କୃଷ୍ଟତା ଉକ୍ତି ବାଢ଼ି ସମଗ୍ର ଜର୍ମାନ ଜାତିକୁ ଏକ ସାମରିକ ଜାତିରୂପେ ଗଢ଼ିବାକୁ ଲାଗିଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ବାଣିଜ୍ୟ ବଜାର ହାସଲ ସଙ୍ଗେ ସଙ୍ଗେ ସାମ୍ରାଜ୍ୟ ପ୍ରତିଷ୍ଠା ତଥା ଶାସକ ଜାତିର ସମ୍ମାନ ଲାଭ । ସେଥିଲାଗି ସାହିତ୍ୟ, ସମ୍ବାଦପତ୍ର, ଚଳଚ୍ଚିତ୍ର ଓ ଶିକ୍ଷାନୁଷ୍ଠାନ ପ୍ରଭୃତି ମଧ୍ୟ ଦେଇ ଲୋକମତ ପରିବର୍ତ୍ତନରେ ଜର୍ମାନ ସରକାର ବ୍ୟସ୍ତ ରହିଲେ । ହିଟ୍‌ଲର ଏବଂ ମୁସୋଲିନ୍ ଏହିପରି ଭାବରେ ଜର୍ମାନୀ ଏବଂ ଇଟାଲିରେ ପରରାଷ୍ଟ୍ରବିରୋଧୀ ମନୋବୃତ୍ତି ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଯୁଦ୍ଧ ମନୋବୃତ୍ତିପୂର୍ଣ୍ଣ ବାୟୁମଣ୍ଡଳ ସୃଷ୍ଟି କରିଥିଲେ । ପ୍ରଥମ ମହାସମରାନ୍ତର ପ୍ରପୀଡ଼ନ ଏବଂ ଆର୍ଥିକ ଦୁରବସ୍ଥାର ପ୍ରତିକ୍ରିୟା ମଧ୍ୟ ଏପରି ପ୍ରତିହିଂସାମୂଳକ କର୍ମଯୋଜନା କାରକ ହୋଇଥିଲେ । ପକ୍ଷାନ୍ତରେ ଶୋଷିତ ଅନୁନ୍ନତ ପ୍ରାଚ୍ୟ ଭୂଖଣ୍ଡରେ ସାମ୍ରାଜ୍ୟବାଦୀ ରାଷ୍ଟ୍ର ଜାପାନ ଅଧିକ ଶକ୍ତିଶାଳୀ ହୋଇ ବାଣିଜ୍ୟ ବଜାର ତଥା ସାମ୍ରାଜ୍ୟ ବିସ୍ତାର ବାସନାରେ ସାମରିକ ସରଞ୍ଜାମ ପ୍ରସ୍ତୁତିରେ ବ୍ୟାପୃତ ରହିଲା । ସେ ଦେଶରେ ଲୋକେ ଅତି ବିଚକ୍ଷଣ ଗତିରେ ଶିଳ୍ପୋନ୍ନତି କରି ସମଗ୍ର ପୃଥିବୀର ବାଣିଜ୍ୟ କ୍ଷେତ୍ରକୁ ଚମତ୍କୃତ କରିଥିଲେ । ପ୍ରଶାନ୍ତ ମହାସାଗରର ଅନ୍ୟ ପାର୍ଶ୍ୱରେ ପ୍ରାକୃତିକ ସମ୍ପଦସଙ୍କୁଳ ଯୁକ୍ତରାଜ୍ୟ ସ୍ୱତଃ ବିକଶିତ ଉତ୍ତୁଙ୍ଗ ଶିଳ୍ପ ସଂସ୍ଥା ରପ୍ତାନୀ ବହୁଳତା ହେତୁ ଦିନକୁ ଦିନ ଧନପୂର୍ଣ୍ଣ

ହେବାକୁ ଲାଗୁଥାଏ । ଅନ୍ୟାନ୍ୟ ବିରୁଦ୍ଧ ଦେଶମାନଙ୍କଠାରୁ ବହୁ-ଦୂରରେ ଥିବାରୁ କୌଣସି ବଳଶାଳୀ ଶକ୍ତିଦ୍ୱାରା ଆକ୍ରାନ୍ତ ହେବାର ଆଶଙ୍କା ନ ଥିଲା । ସେ ଦେଶର ଲୋକମାନେ ବହୁ ଧନ ଅର୍ଜ୍ଜନ କରି ନାନା ଆମୋଦ ପ୍ରମୋଦରେ କାଳାତିପାତ କରିବା ସଙ୍ଗେ ସଙ୍ଗେ ଆବଶ୍ୟକ ହେଲେ ମିତ୍ରଶକ୍ତିକୁ ଆର୍ଥିକ ବା ସାମରିକ ସାହାଯ୍ୟ ଦେବାକୁ ପ୍ରସ୍ତୁତ ଥିଲେ । ଫ୍ରାନ୍ସ ଏବଂ ଇଂଲଣ୍ଡ ପ୍ରଭୃତି ସାମ୍ରାଜ୍ୟ-ବାଦୀ ରାଷ୍ଟ୍ରମାନେ ନିଜ ନିଜ ସାମ୍ରାଜ୍ୟର ପରିସର ଅକ୍ଷୁଣ୍ଣ ରଖିବା ସଙ୍ଗେ ସଙ୍ଗେ ସେମାନଙ୍କର ଅଧୀନସ୍ଥ ଏବଂ ଔପନିବେଶିକ ଦେଶମାନଙ୍କୁ ଚିରଦିନ ନିଜର ବାଣିଜ୍ୟ ବଜାର କରି ରଖିବାକୁ ତତ୍ପର ଥିଲେ । ସେମାନେ ମଧ୍ୟ ଅନ୍ୟ ଏକ ମହାସମରର ଆଶଙ୍କା କରି ନିଜକୁ ପ୍ରସ୍ତୁତ କରି ରଖୁଥିଲେ । ତୁରସ୍କ ପ୍ରଭୃତି କେତେକ ଦେଶମାନ ପ୍ରଥମ ମହାସମରରେ ନଷ୍ଟଭ୍ରଷ୍ଟ ହୋଇଯାଇଥିବାରୁ ଆଭ୍ୟନ୍ତରୀଣ ଶାନ୍ତି, ଶୃଙ୍ଖଳା ଏବଂ ସ୍ୱଚ୍ଛଳତାର ପୁନରୁଦ୍ଧାର କାର୍ଯ୍ୟରେ ଲାଗିରହିଲେ । ଚୀନ୍ ନିଜର ସ୍ୱାଧୀନତାକୁ ବଂଚାଇ ରଖିବାକୁ ନାନା ଦୁଃଖ ଦୁର୍ବିପାକର ସମ୍ମୁଖୀନ ହୋଇ ଜାପାନର କ୍ରୂର କବଳରୁ ନିଜକୁ ରକ୍ଷା କରିବାକୁ ସର୍ବଦା ବ୍ୟସ୍ତ ଥିଲେ ମଧ୍ୟ ନାନା ଆଭ୍ୟନ୍ତରୀଣ ତିକ୍ତତା ତଥା ସଂଘର୍ଷରୁ ବଞ୍ଚିତ ହୋଇ ନ ଥିଲେ । ଏହିପରି ଭାବରେ ପୃଥିବୀର ସ୍ୱାଧୀନ ରାଷ୍ଟ୍ରମାନଙ୍କ ମଧ୍ୟରୁ କେହି କେହି ସାମ୍ରାଜ୍ୟପ୍ରତିଷ୍ଠା ଲାଳସାରେ ବ୍ୟସ୍ତ, କେହି କେହି ସାମ୍ରାଜ୍ୟ ରକ୍ଷାରେ ବ୍ୟସ୍ତ, କେହି କେହି ଆତ୍ମୋନ୍ନତିରେ ବ୍ୟସ୍ତ; କେହି ଅବା ଆତ୍ମରକ୍ଷାରେ ବ୍ୟସ୍ତ କିମ୍ବା ଅନ୍ୟ କେହି ଜନତାକଲ୍ୟାଣ ଦୃଷ୍ଟିରୁ ଆତ୍ମନିୟନ୍ତ୍ରଣ ତଥା ସୁଚିନ୍ତିତ କର୍ମ ଯୋଜନାରେ ବ୍ୟସ୍ତ ଥିଲେ । ସେତେବେଳେ ଭାରତ ପ୍ରଭୃତି ପରାଧୀନ ଦେଶମାନଙ୍କରେ ଜାତୀୟତାବାଦୀ ମନୋବୃତ୍ତି ଜାଗ୍ରତ ହୋଇ ନାନା ଆନ୍ଦୋଳନ

ମାଧ୍ୟମରେ ପ୍ରକାଶିତ ହେବାକୁ ଲାଗିଲେ । ମହାତ୍ମା ଗାନ୍ଧୀଙ୍କ ଭଳି ମହାପୁରୁଷଙ୍କର ନେତୃତ୍ୱ ପ୍ରେରଣା ଏବଂ ନିର୍ଦ୍ଦେଶରେ 'ଅହିଂସାତ୍ମକ' ଆନ୍ଦୋଳନ ସୃଷ୍ଟି ହେଲା । ପୃଥିବୀର ସମସ୍ତ ପରାଧୀନ ଅତ୍ୟାଚାରିତ ଜନତା ନିଜକୁ ସଂଗଠିତ କରିବାକୁ ଲାଗିଲେ; କିନ୍ତୁ ସେମାନଙ୍କ ନିକଟରେ କ୍ଷମତା ବିସ୍ତାର କରିବା ପାଇଁ ଅସ୍ତ୍ର ଶସ୍ତ୍ର ନ ଥିବାରୁ ବାଧ୍ୟ ହୋଇ ଶାସକଗୋଷ୍ଠୀର ରକ୍ତଚକ୍ଷୁ ନିକଟରେ ନତମସ୍ତକ ହେଉଥିଲେ । ସ୍ୱାଧୀନତା ଆନ୍ଦୋଳନର ସାମୟିକ ଦମନ ଫଳରେ ବହୁନେତା ଏବଂ ସ୍ୱାଧୀନତାଭିଳାଷୀ ସୈନିକ ବନ୍ଦୀ ହେଉଥିଲେ । ଏତାଦୃଶ ପରିସ୍ଥିତିରେ ବ୍ୟସ୍ତ ବିବ୍ରତ ହୋଇ ଏବଂ ଅନ୍ୟମାନଙ୍କ ଆକ୍ରମଣ ଆଶଂକାରେ ତ୍ରସ୍ତ ହୋଇ ବୈଧାନିକ ଉପାୟରେ କ୍ରମେ କ୍ରମେ ପରାଧୀନ ରାଷ୍ଟ୍ରମାନଙ୍କୁ ମୁକ୍ତ କରିବାର ପ୍ରତିଶ୍ରୁତି ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ ଦେବାକୁ ବାଧ୍ୟ ହୋଇଥିଲେ । ଔପନିବେଶିକ ରାଜ୍ୟମାନେ ପୃଥିବୀରେ ନିଜର ପ୍ରତିଷ୍ଠା ପ୍ରତିପାଦନ କରିବା ପାଇଁ ଏବଂ ସ୍ୱାଧୀନ ଦେଶମାନଙ୍କ ସହିତ ସମାନ ଅଧିକାର ପାଇବା ପାଇଁ ବ୍ୟସ୍ତ ଥିଲେ । ଏହିଭଳି ପରିସ୍ଥିତିରେ ମଧ୍ୟ ସାମ୍ରାଜ୍ୟ– ବାଦୀ ରାଷ୍ଟ୍ରମାନେ ସେମାନଙ୍କର ପରାଧୀନ ଏବଂ ଔପନିବେଶିକ ରାଜ୍ୟମାନଙ୍କଠାରୁ ଯୁଦ୍ଧରେ ଯଥେଷ୍ଟ ସାମ୍ରାଜ୍ୟ ପାଇବାର ଆଶା ରଖିଥିଲେ । ଏହିପରିଭାବରେ ଆନ୍ତର୍ଜାତିକ ରାଜନୀତି କ୍ଷେତ୍ରରେ ମୁଖ୍ୟତ ତିନିପ୍ରକାର ମତବାଦ ବିଶିଷ୍ଟ ରାଷ୍ଟ୍ରମାନଙ୍କ ଦ୍ୱାରା ପୂର୍ଣ୍ଣଥିଲା । ସାମ୍ୟବାଦ, ଏକଚ୍ଛତ୍ରବାଦ ଓ ସାମ୍ରାଜ୍ୟବାଦ ମଧ୍ୟରେ ସଂଘର୍ଷ ଚାଲିଥିଲା । ଏକଚ୍ଛତ୍ରବାଦ ଏବଂ ସାମ୍ରାଜ୍ୟବାଦ ଉଭୟର ଭିତ୍ତି ପୁଞ୍ଜିବାଦ, ସାମ୍ୟବାଦର ଚିରନ୍ତନ ଶତ୍ରୁ ହୋଇଥିବାରୁ ସେମାନଙ୍କର ସାମ୍ୟବାଦୀ ରାଷ୍ଟ୍ରବିରୁଦ୍ଧରେ ଅନ୍ୟମାନଙ୍କର ମିଳନର ସମ୍ଭାବନା ସର୍ବଦା ରହିଥାଏ । ହୁଏତ ସେମାନଙ୍କ

ସମ୍ମିଳିତ ଉଦ୍ୟମରେ ସାମ୍ୟବାଦ ରାଷ୍ଟ୍ର ଧ୍ୱଂସ ହୋଇ ପାରିଥାନ୍ତା; କିନ୍ତୁ ସମୟ, ପରିସ୍ଥିତି ଏବଂ ବାୟୁମଣ୍ଡଳର ପ୍ରଭାବ ସର୍ବଦା ପ୍ରଗତିର ଅନୁକୂଳ ହୋଇଥିବାରୁ 'ଏକଚ୍ଛତ୍ରବାଦ' ଦେଶମାନଙ୍କର କୋପଦୃଷ୍ଟିରେ ସାମ୍ୟବାଦୀ ରାଷ୍ଟ୍ର ନ ପଡ଼ି ପ୍ରଥମେ ପଡ଼ିଲେ ସାମ୍ରାଜ୍ୟବାଦୀ ରାଷ୍ଟ୍ର । ପ୍ରଥମ ମହାସମରରୁ ଯୁଦ୍ଧର ତିକ୍ତତା ପ୍ରାୟ ପୃଥିବୀର ସମସ୍ତ ସ୍ୱାଧୀନ ରାଷ୍ଟ୍ର ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ ମଧ୍ୟ ସ୍ୱାର୍ଥାନ୍ଧତା ସେମାନଙ୍କର ସମସ୍ତ ବାସ୍ତବ ବୋଧ ଅପହରଣ କଲାଭଳି ଅନ୍ୟ ଏକ ଯୁଦ୍ଧରେ ବ୍ୟାପୃତ ହେଲେ । ଏ ଯୁଦ୍ଧ ପ୍ରଥମେ ହେଲା ସାମ୍ୟବାଦୀ ରାଷ୍ଟ୍ରର ଦୁଇ ବିରୋଧୀ ରାଷ୍ଟ୍ରଙ୍କ ମଧ୍ୟରେ । ସେମାନଙ୍କ ମଧ୍ୟରୁ ଏକଚ୍ଛତ୍ରବାଦୀ ରାଷ୍ଟ୍ରମାନେ ଅତି ନିର୍ଦ୍ଦୟ ଏବଂ ଭୟଙ୍କର ହୋଇଥିବାରୁ ସେମାନଙ୍କର ଧ୍ୱଂସ ହେଲା । ପ୍ରଥମ ଏବଂ ପ୍ରଧାନ ଆବଶ୍ୟକତା ଅବଶ୍ୟ ସେତେବେଳେ ଉଭୟେ ଏକଚ୍ଛତ୍ରବାଦୀ ଏବଂ ସାମ୍ରାଜ୍ୟବାଦୀ ରାଷ୍ଟ୍ର, ସାମ୍ୟବାଦୀ ରାଷ୍ଟ୍ରର ସାହାଯ୍ୟ ଭିକ୍ଷା କରିଥିଲେ । କିନ୍ତୁ ଶେଷୋକ୍ତ ରାଷ୍ଟ୍ର ଉଭୟଙ୍କୁ ଶତ୍ରୁ ବିବେଚନା କରି କାହାରିକୁ ସାହାଯ୍ୟ ନ ଦେବାକୁ ସ୍ଥିର କରିଥିଲେ । କିନ୍ତୁ ଦୁର୍ବୃତ୍ତ ଧ୍ୱଂସାଭିମୁଖୀ ଏକଚ୍ଛତ୍ରବାଦୀ ରାଷ୍ଟ୍ର ସର୍ବଗ୍ରାସୀ ରାକ୍ଷସ-ପ୍ରବୃତ୍ତିପ୍ରବଣ ହୋଇ ଆକ୍ରମଣ କଲାରୁ ଅନ୍ୟ ପକ୍ଷ ସହିତ ମିତ୍ରତା କରି ଏକଚ୍ଛତ୍ରବାଦୀ ରାଷ୍ଟ୍ରକୁ ସମ୍ପୂର୍ଣ୍ଣରୂପେ ଧ୍ୱସ୍ତବିଧ୍ୱସ୍ତ କଲେ । ଏ ଯୁଦ୍ଧରେ ସମଗ୍ର ପୃଥିବୀ ବହୁପରିମାଣରେ କ୍ଷତିଗ୍ରସ୍ତ ହେଲା । ଦେଶଦେଶାନ୍ତରେ ନିରୀହ ଜନତା ଯୁଦ୍ଧ ପ୍ରଭାବରେ ନାନା ଦୁଃଖ-କଷ୍ଟ ଭୋଗ କଲେ । ନିର୍ଦ୍ଦିଷ୍ଟ ଯୁଦ୍ଧକ୍ଷେତ୍ରରେ ବହୁ ଜନକ୍ଷୟ ହେଲା-କିନ୍ତୁ ଖାଦ୍ୟାଭାବ, ବସ୍ତ୍ରାଭାବ ଏବଂ ଅନ୍ୟାନ୍ୟ ଅନେକ ଆବଶ୍ୟକୀୟ ବସ୍ତୁର ଅଭାବରୁ ସମଗ୍ର ପୃଥିବୀର ଅର୍ଥନୈତିକ ପରିସ୍ଥିତି ଅତୀବ ଜଟିଳ ହେବାକୁ ଲାଗିଲା । ଅଭାବ ଅନାଟନ, ଦାରିଦ୍ର୍ୟ, ବ୍ୟାଧି ପ୍ରଭୃତି

ଷଡ଼ଯନ୍ତ୍ରକାରୀ ଶକ୍ତିମାନଙ୍କର ନିର୍ଭୀକ ତାଣ୍ଡବ ସୃଷ୍ଟି କଲା ଜନତା ଚିତ୍ତରେ ଜାଗରଣ । ପ୍ରତ୍ୟେକ ପରାଧୀନ ତଥା ସ୍ୱାଧୀନ ଦେଶରେ ଜଳି ଉଠିଲା ବିପ୍ଳବ-ବିଦ୍ରୋହର ବହ୍ନି । ସେ ବହ୍ନିକୁ ନିର୍ବାପିତ କରିବା ଲାଗି ରକ୍ଷଣଶୀଳ ପୁଞ୍ଜିବାଦୀ ଶ୍ରେଣୀ ସଂପୂର୍ଣ୍ଣ ଅକ୍ଷମ ହୋଇ ପଡ଼ିଲା । ସାମ୍ରାଜ୍ୟବାଦୀ ତଥା ଔପନିବେଶିକ ଶକ୍ତିମାନଙ୍କର ହେଲା ଚରମ ପରାଜୟ । ଆନ୍ତର୍ଜାତିକ ରାଜନୈତିକ ପରିସ୍ଥିତି ତଥା ଆଭ୍ୟନ୍ତରୀଣ ବୈପ୍ଳବାତ୍ମକ ଜାଗରଣ ଇଂଲଣ୍ଡ, ହଲାଣ୍ଡ, ଫ୍ରାନ୍ସ ପ୍ରଭୃତି ଦେଶମାନଙ୍କୁ ବାଧ୍ୟ କଲେ । ସେମାନଙ୍କର ପରାଧୀନ ରାଜ୍ୟମାନଙ୍କୁ ମୁକ୍ତ, ସ୍ୱାଧୀନ ରାଷ୍ଟ୍ରରୂପେ ମାନିନେବାକୁ ଯେଉଁମାନେ କୁଣ୍ଠା ପ୍ରକାଶ କରି ଆଧିପତ୍ୟ ବଞ୍ଚାଇ ରଖିବାକୁ ଶକ୍ତି ପ୍ରୟୋଗ କଲେ ସେମାନଙ୍କର ଶ୍ରେଷ୍ଠ ପୁରସ୍କାର ହେଲା ପରାଜୟ ଏବଂ ପ୍ରତ୍ୟାବର୍ତ୍ତନ । ସୃଷ୍ଟିର ଅନାଟ୍ୟ ନିୟମର ପ୍ରତିକୂଳ ପରିସ୍ଥିତିରେ ଅବତାରଣା ସର୍ବଦା ଧ୍ୱଂସର ପୂର୍ବାଭାସ । ମାନବ ସମାଜର ପ୍ରାରମ୍ଭର ଭିନ୍ନ ଭିନ୍ନ ଘଟଣାର ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ ସମୟର ଗତି ବିରୁଦ୍ଧରେ ଦଣ୍ଡାୟମାନ ଯେ କୌଣସି ଶକ୍ତି ସ୍ୱତଃ ପରାଜିତ । ସେଥିପାଇଁ ଅଭିଜ୍ଞ, ପ୍ରବୀଣ ତଥା ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତିମାନେ ସମୟ ଏବଂ ପ୍ରଗତିଶୀଳ ଚିନ୍ତାଧାରା ସହିତ ଅନୁକୂଳ ଗତି କରି ନିଜର ମର୍ଯ୍ୟାଦା ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ସମାଜ ତଥା ମାନବ ଜାତିର ନାନା କଲ୍ୟାଣ ପ୍ରତିଷ୍ଠା କରିଥାନ୍ତି ।

ମାନବ ସମାଜକୁ ଦ୍ୱିତୀୟ ମହାସମରର ଶ୍ରେଷ୍ଠ ଅବଦାନ ହେଲା ପ୍ରାଚ୍ୟ ଭୂଖଣ୍ଡର ନିଷ୍ପେଷିତ ଜନତାର ଜାଗରଣ । ଭାରତ, ଇଣ୍ଡୋନେସିଆ ଓ ବର୍ମା ପ୍ରଭୃତି ଚିର ଦାରିଦ୍ର୍ୟପ୍ରପୀଡ଼ିତ ଅନୁନ୍ନତ ଦେଶପୁଞ୍ଜ ଆନ୍ତର୍ଜାତିକ ଓ ରାଜନୈତିକ ପ୍ରାଙ୍ଗଣରେ ଉତ୍ତୋଳିତ ମସ୍ତକ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଗଣିତ ହେଲେ ।

ଆରବ, ପାର୍‌ସ୍ୟ, ଇଜିପ୍ଟ ପ୍ରଭୃତି ମଧ୍ୟପ୍ରାଚ୍ୟ ରାଷ୍ଟ୍ରମାନଙ୍କର ଦେଶ ସ୍ଥିତ ଜନତାର ହେଲା ଆତ୍ମଅବବୋଧ । ପ୍ରତ୍ୟେକ ଦେଶର ନିର୍ଯ୍ୟାତିତ ଜନତା ଶ୍ରେଣୀ ପାର୍ଥକ୍ୟ ଉପଲବ୍‌ଧି କଲେ । ସେମାନଙ୍କ ମଧ୍ୟରେ ଶ୍ରେଣୀ ଚେତନା ଜାଗ୍ରତ ହେଲା । ଶିକ୍ଷା, ସଂସ୍କୃତି ଏବଂ ବାସ୍ତବ-ବୋଧ ବିବେଚନାରେ ଭିନ୍ନ ଭିନ୍ନ ସ୍ଥାନରେ ବିପ୍ଳବର ବହ୍ନି ଜଳି ଉଠିଲା । ସାମ୍ରାଜ୍ୟବାଦ ବା ଔପନିବେଶିକ ପରାଧୀନତାର ବିଲୋପ ସଙ୍ଗେ ସଙ୍ଗେ ଶ୍ରେଣୀ ସଙ୍ଘର୍ଷ ଆଭାସ ଦେଲେ କର୍ମଜୀବୀ ଗୋଷ୍ଠୀ । ଯେଉଁ ଯେଉଁ ସ୍ଥାନମାନଙ୍କରେ ନ୍ୟସ୍ତସ୍ୱାର୍ଥ ଶୋଷକ ଶାସକଗୋଷ୍ଠୀର ଶକ୍ତି ହେଲା ଅଧିକ, ସେଠାରେ ସଙ୍ଘର ହେଲା ଅପଳାପ । ବାସ୍ତବତାର ହେଲା ବିପର୍ଯ୍ୟୟ । ବୁଭୁକ୍ଷୁ ଦମନର ଘୃଣ୍ୟ ତାଣ୍ଡବ ହେଲା ଆନନ୍ଦ । ରୂକ୍ଷ, କର୍କଶ, ଅମାନୁଷିକ ଶୋଷକ ଗୋଷ୍ଠୀର ଧ୍ୱଂସ ସ୍ୱତଃ ଏବଂ ଅନିବାର୍ଯ୍ୟ ବୋଲି ପୂର୍ବାଭାସ ଦେଲା ସେହିମାନଙ୍କର କର୍ମପନ୍ଥା ଏବଂ ଶାସନ ପ୍ରଣାଳୀ ପକ୍ଷାନ୍ତରରେ ଚୀନ୍ ପରି ଦେଶର ହେଲା ନୂତନ ଯୁଗର ଆବିର୍ଭାବ । ନୂତନ ସଭ୍ୟତା ଏବଂ ସଂସ୍କୃତିରେ ଅନୁପ୍ରାଣିତ ଜନତା ଦେଶର ସମୂହ ଉନ୍ନତିପାଇଁ କଲେ ସମବେତ ଚେଷ୍ଟା, ସମ୍ମିଳିତ ଉଦ୍ୟମ ଫଳରେ 'ପ୍ରଗତି' ହେଲା ସହଜ ଏବଂ ସୁସାଧ୍ୟ, ଶୋଷକ ଶ୍ରେଣୀର ହେଲା ଚିର-ଅବସାନ । କାଳବକ୍ଷରେ ସ୍ୱାର୍ଥାନ୍ଧ, ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ହେଲା ବିଲୀନ । ସମାଜରେ ବିରାଜିବାକୁ ଆରମ୍ଭ କଲା ବାସ୍ତବ ମାନବିକତା । ପ୍ରତ୍ୟେକ ବ୍ୟକ୍ତିର ଆସିଲା କର୍ତ୍ତବ୍ୟ-ବୋଧ । ସମାନ ସୁବିଧା ସୁଯୋଗ ପାଇ ନାନା ଦିଗରେ ସାମାଜିକ ଉନ୍ନତି ପାଇଁ ଅଗ୍ରସର ହେଲେ ଦେଶର ଜନତା । ଦରିଦ୍ର ଅନାଟନ, ଅଭାବ ପ୍ରଭୃତିର ଚିର ଅପସାରଣ ଲାଗି ସମଗ୍ର ଜନତା ହେଲା ଦୃଢ଼ ପରିକର । ଫଳରେ ଅର୍ଥନୈତିକ, ରାଜନୈତିକ ତଥା ସାମାଜିକ କଲ୍ୟାଣ ହେଲା ସ୍ୱତଃ ବିରାଜିତ ।

ଜନ ଜାଗରଣ ହେଲା ଶ୍ରେଷ୍ଠ ପୁଂଜିବାଦ ରାଷ୍ଟ୍ରର ଅନ୍ତରରେ ଗୁରୁତର ଦରଜ, ଆତ୍ମ ବିପର୍ଯ୍ୟୟର ଆଶଙ୍କା କଲା ଉନ୍ମତ । ସାମ୍ରାଜ୍ୟର ଛଳନାରେ ଶୋଷଣର ସୂତ୍ର ପାଶର ହେଲା ପ୍ରସାରଣ । ପୃଥିବୀର ବିଭିନ୍ନ ଦେଶମାନଙ୍କର ନ୍ୟସ୍ତ ସ୍ୱାର୍ଥ ଆତ୍ମକୈନ୍ଦ୍ରିକ ଶାସକ ଗୋଷ୍ଠୀ ପାଇଲେ ଅଜସ୍ର ଅର୍ଥ ସାହାଯ୍ୟ । ଜନତାର ଚେତନା ଲୋକଙ୍କୁ ଛିନ୍ନଭିନ୍ନ କରିବାକୁ ଚାଲିଲା ନାନା କୁମନ୍ତ୍ରଣା, ଚକ୍ରାନ୍ତ; କିନ୍ତୁ ଫଳରେ ହେଲା ବିପରୀତ । ଉକ୍ତ କ୍ରିୟାର ହେଲା ଗୁରୁତର ପ୍ରତିକ୍ରିୟା । ପ୍ରତ୍ୟେକ ସାହାଯ୍ୟଦତ୍ତ ରାଷ୍ଟ୍ରର ଜନତା ଜାଣିଲେ ବାସ୍ତବ ଉଦ୍ଦେଶ୍ୟ ଉପଲବ୍ଧି କଲେ । ସୃଷ୍ଟି ହେଲା ଆଭ୍ୟନ୍ତରୀଣ ସଂଘର୍ଷ । ହସ୍ତକ୍ଷେପ କରିବାକୁ ମିଳିଲା ଚରମ ସୁଯୋଗ । କୋରିଆ, ଇଣ୍ଡୋଚାଇନା ପ୍ରଭୃତି ଦେଶମାନଙ୍କର ଉନ୍ନତିର ଆବରଣ ତଳେ ସମଗ୍ର ଜନ-ସମାଜର ଶ୍ରେଷ୍ଠ କଲ୍ୟାଣ ପ୍ରତୀକ ସାମ୍ୟବାଦର ଧ୍ୱଂସଲାଗି ଚାଲିଲା ଷଡ଼ଯନ୍ତ୍ର । ସାଧାରଣ ଜନତାର ଧ୍ୱଂସ ଲାଗି ଜୀବାଣୁ ବୋମାର ପ୍ରୟୋଗ ସଙ୍ଗେ ସଙ୍ଗେ ସେମାନଙ୍କର ଜୀବିକା ନିର୍ବାହର ସମସ୍ତ ଉପାୟ ହେଲା ପଙ୍ଗୁ । ଏହିପରି ଭାବରେ ନାନା ଉପାୟରେ ପୁଂଜିବାଦକୁ ବଞ୍ଚାଇ ରଖିବାକୁ ପ୍ରଚେଷ୍ଟାର ବ୍ୟର୍ଥତା ଉପଲବ୍ଧି କରି ଚାଲିଛି ପରମାଣୁ ଯୁଦ୍ଧର ଧମକ; କିନ୍ତୁ ଏ ଯୁଦ୍ଧର ସମ୍ଭାବନା ଅତି ଅଳ୍ପ । ଏ ଯୁଦ୍ଧ ହେବ ଯେତେ ଶୀଘ୍ର, ସେତେ ଶୀଘ୍ର ପୃଥିବୀ ପୃଷ୍ଠରୁ ସଂପୂର୍ଣ୍ଣରୂପେ ଅପସାରିତ ହେବ ପୁଂଜିବାଦ । ସେଥିଲାଗି ନିଜେ ପୁଂଜିବାଦୀ ରାଷ୍ଟ୍ର ନିଜକୁ ବଞ୍ଚାଇ ରଖିବାକୁ ବାରମ୍ବାର ଯୁଦ୍ଧ ଡାକରା ଦେଲେ ମଧ୍ୟ ସକ୍ରିୟ ଯୁଦ୍ଧଯୋଜନାରୁ ହେବେ ବିରତ । ମିଳିତ ଜାତିସଙ୍ଘର ଆଳ ନେଇ ନିଜର ଆକ୍ରୋଶ ସାଧନ କଲେ ମଧ୍ୟ ପ୍ରତ୍ୟକ୍ଷ ଯୁଦ୍ଧରେ ଅବତୀର୍ଣ୍ଣ ହେବା ଅସମ୍ଭବ ।

ବାରମ୍ବାର ଯୁଦ୍ଧର ଭୀଷଣ ତିକ୍ତତା ଅନୁଭବ କଲେ ମଧ୍ୟ ଜନସମାଜ ଯେ କାହିଁକି ପତଙ୍ଗ ସମାନ ସ୍ୱାର୍ଥାନଳରେ ଦଗ୍ଧ ହେବାରେ ପ୍ରବୀଣ, ଏହା ଆଲୋଚନା କଲେ ଆମେ ଦେଖିବା ଯେ ବହୁପରିମାଣରେ ଜନ-ସମାଜର ଏତାଦୃଶ ମନୋବୃତ୍ତିର ପଛରେ ରହିଛି ସାମାଜିକ ତଥା ବ୍ୟକ୍ତିଗତ ମନସ୍ତାତ୍ତ୍ୱିକ ତଥ୍ୟ । ଏ ପର୍ଯ୍ୟନ୍ତ ସମାଜରେ ମନସ୍ତତ୍ତ୍ୱର ଦୃଷ୍ଟି ଭଙ୍ଗି ଏବଂ ବିଚାର ପଦ୍ଧତି ଥିଲା ଭିନ୍ନ ଧରଣର ମନସ୍ତତ୍ତ୍ୱ କହିଲେ ସାଧାରଣତଃ ଲୋକେ ମାନବ ପ୍ରକୃତିର ସାଧାରଣ ନିୟମମାନଙ୍କର ପରୀକ୍ଷାମୂଳକ ଅନୁଧ୍ୟାନକାରୀ ଶକ୍ତିକୁ ବୁଝୁଥିଲେ । ଆତ୍ମଦର୍ଶନ ତଥା ଆତ୍ମ-ଅନୁସନ୍ଧାନ ପୂର୍ବକ ମାନବିକ, ପ୍ରକୃତି, ଚିତ୍ତବୃତ୍ତି ପ୍ରଭୃତି ମାନସିକ କ୍ରିୟା, ପ୍ରକ୍ରିୟା ଏବଂ ପ୍ରତିକ୍ରିୟାର ନିର୍ଦ୍ଧାରିତ ନିୟମାନୁଯାୟୀ ଅଭିବ୍ୟକ୍ତି ଥିଲା ମନସ୍ତତ୍ତ୍ୱର ଲକ୍ଷ୍ୟ । ପରିବେଷ୍ଟନୀ ଏବଂ ବାୟୁମଣ୍ଡଳର ପ୍ରଭାବ ବହୁପରିମାଣରେ ମନୁଷ୍ୟର ଚିନ୍ତାଧାରା ଏବଂ ଜୀବନଯାପନ ପ୍ରଣାଳୀକୁ ନିୟନ୍ତ୍ରଣ କରୁଥିବାରୁ ସାମାଜିକ ଅଭିବୃଦ୍ଧିର ବିଭିନ୍ନ ସ୍ତରମାନଙ୍କରେ ମାନସିକ ଶକ୍ତି ଏବଂ ନୈତିକ ବଳର ବିଚାର ପ୍ରଣାଳୀ ଭିନ୍ନ ପ୍ରକାରର ହୋଇଥିବା ସ୍ୱତଃ ମନସ୍ତତ୍ତ୍ୱ ଏକ ନିର୍ଦ୍ଦିଷ୍ଟ ତଥା ମୂଲ୍ୟବାନ୍ ସାମାଜିକ ବିଜ୍ଞାନରୂପେ ଆଦୃତ ହେବା ପୂର୍ବରୁ ସ୍ଥୂଳତଃ ମାନସିକତାର ଅନ୍ତର୍ଭୁକ୍ତ ଥିଲା । ବ୍ୟକ୍ତିବିଶେଷରେ ମାନସିକ ଅବସ୍ଥାର ପାର୍ଥକ୍ୟ ପରିଲକ୍ଷିତ ହେଉଥିବାରୁ ମନସ୍ତତ୍ତ୍ୱକୁ ମଧ୍ୟ ବ୍ୟକ୍ତିଗତ ବିଷୟବସ୍ତୁ ବୋଲି ସମାଜ ଗ୍ରହଣ କଲା । ବ୍ୟକ୍ତି-ଜୀବନ ବହୁପରିମାଣରେ ସାମାଜିକ ଜୀବନ ସହିତ ସଂଶ୍ଳିଷ୍ଟ ରହୁଥିବାରୁ ଏବଂ ଧନତନ୍ତ୍ର ସମାଜରେ ଶ୍ରେଣୀ ପାର୍ଥକ୍ୟ ଏକ ଗୌରବାତ୍ମକ ଉତ୍କର୍ଷତା ବୋଲି ପ୍ରତିପାଦିତ ହେଉଥିବାରୁ ମନସ୍ତତ୍ତ୍ୱ ମଧ୍ୟ ତଦନୁକୂଳ ଗତି ଆଚରଣ କଲା । ବ୍ୟକ୍ତିବିଶେଷଙ୍କର ଆଧିପତ୍ୟ

ତଥା ଇଙ୍ଗିତରେ ସମଗ୍ର ସମାଜ ପରିଗୃହୀତ ହେଉଥିବାରୁ ଏବଂ ପରିବାର ଧର୍ମ, ଶିକ୍ଷା ପ୍ରଭୃତି ନାନା ମୌଳିକ ସାମାଜିକ ଅନୁଷ୍ଠାନ ନ୍ୟାସ୍ତ୍ୟାତ୍ମକ ବ୍ୟକ୍ତି ପ୍ରାଧାନ୍ୟର ଅଭିବ୍ୟକ୍ତି ଲାଗି ପ୍ରଚ୍ଛନ୍ନ ପ୍ରାଙ୍ଗଣ ରୂପେ ବ୍ୟବହୃତ ହେଉଥିବାରୁ ବ୍ୟକ୍ତିଗତ ଶକ୍ତି ଆହରଣ ତଥା ପ୍ରାଧାନ୍ୟ ପ୍ରତିଷ୍ଠାର ଅତୃପ୍ତ ଲାଲସାରେ ବିବ୍ରତ ନିରତ ସୁଯୋଗା-ପେକ୍ଷୀ ଶୋଷକଶ୍ରେଣୀ ଆତ୍ମକେନ୍ଦ୍ରିକ ପ୍ରତିଯୋଗିତାର କ୍ଷୁଦ୍ର ପରିସର ମଧ୍ୟରେ ମନସ୍ତତ୍ତ୍ୱକୁ ସୀମାବଦ୍ଧ କଲେ । ତେଣୁ ସାମାଜିକ ଜୀବନରେ ମନସ୍ତତ୍ତ୍ୱର ସ୍ଥାନ ବହୁ ଉଚ୍ଚରେ ଥିଲେ ମଧ୍ୟ ଲୋକମାନେ ଏହାର ବାସ୍ତବ ପ୍ରଭାବ ଉପଲବ୍ଧି ନ କରି ଏହା ଏକ ବ୍ୟକ୍ତିଗତ ବିଷୟ ବୋଲି ଭାବି ପର୍ଯ୍ୟାଲୋଚନାରେ ଉଦାସୀନ ରହୁଥିଲେ । ପୂର୍ଣ୍ଣାଙ୍ଗ ଜୀବନ ଯାପନ କରିବାକୁ ହେଲେ ମନୁଷ୍ୟକୁ ତାହାର ବ୍ୟକ୍ତିଗତ ଜୀବନର ମୂଲ୍ୟ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ସାମାଜିକ ଜୀବନର ମହତ୍ତ୍ୱ ତଥା ଆବଶ୍ୟକତା ଉପଲବ୍ଧି କରିବା ଯେପରି ସର୍ବାଦୌ ଅପରିହାର୍ଯ୍ୟ, ସେହିପରି ମନସ୍ତତ୍ତ୍ୱର ବ୍ୟକ୍ତିଗତ ତଥା ସାମାଜିକ ଧାରାଦ୍ୱୟର ଘନିଷ୍ଠ ସଂପର୍କ ବିଷୟରେ ସମ୍ୟକ୍ ଆଲୋଚନା କରିବା ନିତାନ୍ତ ଅବର୍ଜନୀୟ । ଅବଶ୍ୟ ଶିକ୍ଷା ସଂସ୍କୃତି ତଥା ସଭ୍ୟତାର ଉନ୍ନତି ସଙ୍ଗେ ସଙ୍ଗେ ପରିବର୍ତ୍ତିତ ଚିନ୍ତାଧାରା ଏବଂ ପ୍ରଶସ୍ତ ଦୃଷ୍ଟି ପରିସର ବିଭିନ୍ନ ବିଷୟର ବାସ୍ତବବୋଧ ଜାଗ୍ରତ କରିବାରେ ସମର୍ଥ ହେବାରୁ ବର୍ତ୍ତମାନ ଆମେ ସାମାଜିକ ମନସ୍ତତ୍ତ୍ୱର ଉପାଦେୟତା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ବହୁକାଳରୁ ମାନବ ସମାଜରେ ଏହାର ଗୁରୁତ୍ତ୍ୱ ହୃଦୟଙ୍ଗମ କରୁଛୁ; କିନ୍ତୁ ସାମାଜିକ ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯିବ ବ୍ୟକ୍ତିଗତ ତଥା ସାମାଜିକ ଆଚରଣ ମନସ୍ତତ୍ତ୍ୱଦ୍ୱାରା କିପରି ବହୁପରିମାଣରେ ପ୍ରଭାବିତ ହୋଇଥିଲା । ପ୍ରାଚୀନ ଯୁଗ, ମଧ୍ୟଯୁଗ ଏବଂ ଆଧୁନିକ

ଯୁଗର ସାମାଜିକ ଆଚରଣ ଓ ଚରିତ୍ରର ବିଶ୍ଳେଷଣ କଲେ ସ୍ପଷ୍ଟ ପାର୍ଥକ୍ୟ ଦେଖାଯାଏ । ଏ ପାର୍ଥକ୍ୟ ଅନ୍ତରାଳରେ ମନସ୍ତତ୍ତ୍ୱ ସତତ ଜାଗ୍ରତ ।

ଅର୍ଥନୀତି, ରାଜନୀତି, ଶିକ୍ଷା ପ୍ରଭୃତି ନାନା ସାମାଜିକ ବିଜ୍ଞାନ-ମାନଙ୍କର ବୈପ୍ଳବିକ ପରିବର୍ତ୍ତନପ୍ରୟାସୀ ଶୋଷିତ ଜନତା ଉତ୍ତମରୂପେ ଉପଲବ୍ଧି କରୁଛି ଯେ, ନ୍ୟସ୍ତସ୍ୱାର୍ଥ ଶ୍ରେଣୀ ପାର୍ଥକ୍ୟ ପୂଜକ ସାମାଜିକ ମଲ୍ଲଗୋଷ୍ଠୀ ଆତ୍ମକେନ୍ଦ୍ରିକତା ଦ୍ୱାରା ସର୍ବଦା ପ୍ରଭାବିତ ହୋଇ ମନସ୍ତତ୍ତ୍ୱର ପ୍ରୟୋଗ ପ୍ରଣାଳୀର ଏକ ଭ୍ରାନ୍ତିସଂକୁଳ ପଥ ପ୍ରତିପାଦିତ କରିଛନ୍ତି । ମନସ୍ତତ୍ତ୍ୱର ପ୍ରୟୋଗ ଏତାଦୃଶ ଭ୍ରମାତ୍ମକ ହେଉଥିବାରୁ ସାମାଜିକ ସମ୍ପର୍କ ବିଭ୍ରାନ୍ତିମୟ ହେବା ସଙ୍ଗେ ସଙ୍ଗେ ନିର୍ଯ୍ୟାତିତ ଜନତା ନାନା ସଂଘର୍ଷର ସମ୍ମୁଖୀନ ହୋଇ ବହୁ ପରିମାଣରେ କ୍ଷତିଗ୍ରସ୍ତ ହେଉଛନ୍ତି । ଭୌତିକ, ମାନସିକ ତଥା ଆଧ୍ୟାତ୍ମିକ ଉନ୍ନତି ବା ଅଗ୍ରଗତିରେ ନାନାପ୍ରକାର ଅନ୍ତରାୟ ଉପସ୍ଥିତ; ମାନବ କଲ୍ୟାଣ ପଥରେ ଗୁରୁତର ତ୍ରୁଟି ଉଦ୍ଘାଟିତ ।

ବ୍ୟକ୍ତିଗତ ସଂଘର୍ଷ, ଜାତୀୟ ବିପ୍ଳବ, ଆନ୍ତର୍ଜାତିକ ଯୁଦ୍ଧ ବା ଗୃହବିବାଦ ସମସ୍ତ ପ୍ରକାର ବିପରୀତାତ୍ମକ ଚିନ୍ତାଧାରାସମ୍ଭୂତ କ୍ରିୟା-ପ୍ରତିକ୍ରିୟାମୂଳରେ ମନସ୍ତତ୍ତ୍ୱ ସର୍ବଦା ବିଦ୍ୟମାନ । ବ୍ୟକ୍ତିଗତ ତଥା ସମଷ୍ଟିଗତ ମନସ୍ତତ୍ତ୍ୱର ବିକାଶ ସ୍ତର ବିଭିନ୍ନ ସମାଜରେ ଭିନ୍ନ ଭିନ୍ନ ବ୍ୟକ୍ତିମାନଙ୍କ ମଧ୍ୟରେ ସେମାନଙ୍କର ଜାତିଗତ, ବର୍ଣ୍ଣଗତ, ସାମାଜିକ ପରଂପରା ତଥା ସଭ୍ୟତା ଏବଂ ସଂସ୍କୃତିଗତ ହୋଇଥାଏ । କିନ୍ତୁ ପ୍ରତ୍ୟେକ ସମାଜରେ ଶିକ୍ଷିତ, ବିଦ୍ୱାନ୍, ମାନସିକ ଚର୍ଚ୍ଚାରତ ବ୍ୟକ୍ତି-ମାନଙ୍କର ଅକ୍ଳାନ୍ତ ପରିଶ୍ରମ ଏବଂ ଅନୁଧ୍ୟାନ ଦ୍ୱାରା ମନସ୍ତତ୍ତ୍ୱର ବିକାଶ ଏବଂ ପ୍ରଗତିର ବହୁପରିମାଣରେ ସମ୍ପାଦିତ ହୋଇଥାଏ । ଫଳତଃ

ଅପେକ୍ଷାକୃତ ନିମ୍ନ ମାନସିକ ସ୍ତରସ୍ଥ ଜନତା ବିଶେଷଭାବେ ପ୍ରଭାବିତ ହୋଇଥାଏ । ତେଣୁ ଉକ୍ତ ଶିକ୍ଷିତ ଶ୍ରେଣୀ ଯେଉଁମାନେ ନିଜକୁ ସମାଜର ନେତା, ଅଗ୍ରଦୂତ ବା ପଥପ୍ରଦର୍ଶକ ବୋଲି ଦାବୀ କରନ୍ତି, ଯଦି ସମଗ୍ର ଜନତାକୁ ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ, ସୁଖ ବା ସ୍ୱାଚ୍ଛନ୍ଦ୍ୟସମ୍ବଳିତ କୌଣସି ସାମାଜିକ କ୍ରିୟା ବା ପ୍ରତିକ୍ରିୟା ଆଡ଼କୁ ପରିଚାଳିତ କରନ୍ତି, ତା' ହେଲେ ଶିକ୍ଷା-ସୁଯୋଗ-ରହିତ ନିରୀହ ଜନତା ନିଜର ଆତ୍ମବଳୀ ଦେଇ ସେମାନଙ୍କର ସ୍ୱାର୍ଥରକ୍ଷା କରିବାକୁ ବାଧ ହୋଇଥାନ୍ତି । ଏତାଦୃଶ ଘଟଣାରାଜିରେ ଶ୍ରେଣୀ-ସମାଜ ସମୃଦ୍ଧ । ଏପର୍ଯ୍ୟନ୍ତ ଜାତି ତଥା ଆନ୍ତର୍ଜାତିକ କ୍ଷେତ୍ରରେ ଯେତେ ରଣବହ୍ନିଶିଖାର ଧ୍ୱଂସକ ତାଣ୍ଡବ ଲକ୍ଷ ଲକ୍ଷ ନିରୀହ ମାନବ ପ୍ରାଣ ଦେଇ କରିଛି ଖାମଖିଆଲ ଖେଳ, ସେ ସମସ୍ତ ମୂଳରେ ରହିଛି ଶ୍ରେଣୀ-ସ୍ୱାର୍ଥ । ସାଧାରଣ ଜନତାର ମନସ୍ତାତ୍ତ୍ୱିକ ଧାରାକୁ ଏପରିଭାବରେ ଅପବ୍ୟବହୃତ କରାହୁଏ ଯେ ସେମାନେ ଯେଉଁ କାର୍ଯ୍ୟକୁ ବିଶେଷ ଘୃଣା କରନ୍ତି, ସେହି କାର୍ଯ୍ୟକୁ ବହୁ ଆଦର କରିବାରେ ମଧ୍ୟ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ବ୍ୟକ୍ତିଗତ ବା ସାମାଜିକ ଜୀବନରେ ଯେଉଁ କାର୍ଯ୍ୟକୁ ପାପ ବୋଲି ମନେ କରନ୍ତି, ପରିବର୍ତ୍ତିତ ମାନସିକ ପରିସ୍ଥିତିରେ ଉକ୍ତ ପାପକୁ ଗୁରୁତର ଗୌରବର ବିଷୟ ବୋଲି ବିଚାରନ୍ତି । ଯେଉଁ ନରହତ୍ୟାକୁ ସମାଜ ଦିଏ ମୃତ୍ୟୁଦଣ୍ଡ, ସେହି ସମାଜ ଯୁଦ୍ଧଭୂମିରେ ସ୍ୱାଗତ କରେ ଠିକ୍ ସେହିପରି ନରହତ୍ୟାକୁ । ଯେ ଜଣେ ଲୋକ ପରିବର୍ତ୍ତେ ମାରିଥାଏ ଶହ ଶହ ଲୋକ, ଧ୍ୱଂସ କରିଥାଏ ବହୁ ନିରୀହ ଜନତାର ବାସଗୃହ, ଖାଦ୍ୟ ଏବଂ ପରିଧାନ । ଯେ ସହସ୍ର ପରିବାରରେ ଆଣିଥାଏ ଚିରଦିନ ଲାଗି କ୍ରନ୍ଦନ, ଦୁଃଖ ଏବଂ ଦୁର୍ବିପାକ, ସେ ହୁଏ ପୁରସ୍କୃତ, ଆଦୃତ ଏବଂ ସମ୍ମାନିତ । ଯେଉଁ ଧନୀକ ଶ୍ରେଣୀର ଲୁଣ୍ଠନ, ଶୋଷଣ, ଅତ୍ୟାଚାର ଫଳରେ ଅନାହାର, ଦାରିଦ୍ର୍ୟ

ଏବଂ ବ୍ୟାଧି ଗ୍ରାସକରେ ନିରକ୍ଷର ନିର୍ଦ୍ଦୋଷ ଜନତାଙ୍କୁ, ସେହି ଧନୀକ ଶ୍ରେଣୀ ହିଁ ଏ ଶ୍ରେଣୀକୁ ସାମାଜିକ ପାବଚ୍ଛାସୀନ । ସମାଜରେ ନାନା ପାର୍ଥକ୍ୟ, ପ୍ରଭେଦ ସୃଷ୍ଟି କରି ଜ୍ଞାନାଲୋକପ୍ରାପ୍ତ ମୁଷ୍ଟିମେୟ ଶିକ୍ଷିତ ଶ୍ରେଣୀକୁ କରେ କରଗତ । ଫଳରେ ଶ୍ରେଣୀସ୍ୱାର୍ଥ ବଞ୍ଚିରହେ ଚିରଦିନ ଲାଗି । ସାମନ୍ତବାଦ, ପୁଂଜିବାଦ ପ୍ରଭୃତି ନାନା ଅର୍ଥନୈତିକ ପଦ୍ଧତିର ପରିକଳ୍ପନାମୂଳରେ ଶ୍ରେଣୀସ୍ୱାର୍ଥର ସଜାଗ ମୂର୍ତ୍ତି ଶୋଷଣ ଛୁରିକାରେ ଖଣ୍ଡ ବିଖଣ୍ଡ କରିଛି ସାମୂହିକ ସାମାଜିକ ସ୍ୱାର୍ଥ । ଯେତେ ସମର, ସଂଗ୍ରାମ ବା ସଂଘର୍ଷର ସୃଷ୍ଟି ହୋଇଛି, ସବୁର ଉପସ୍ଥିତି ସ୍ଥୂଳ ଶ୍ରେଣୀସ୍ୱାର୍ଥ । ପ୍ରଥମ ମହାସମରର ସ୍ରଷ୍ଟା ଜର୍ମାନୀ ଦେଶର ପୁଂଜିପତିଗୋଷ୍ଠୀ ପୁଂଜିପତିମାନଙ୍କର ବାଣିଜ୍ୟ ବଜାର ଲାଳସା ଏବଂ ଶାସକଗୋଷ୍ଠୀର ସାମ୍ରାଜ୍ୟ ପ୍ରତିଷ୍ଠା ଲିପ୍ସା ସମର ପ୍ରୟାସ-ପ୍ରବଣ କରିଥିଲା ଜର୍ମାନ ସମାଜ ଚାଳକଗୋଷ୍ଠୀକୁ । କିନ୍ତୁ ସେମାନେ ଉତ୍ତମରୂପେ ଉପଲବ୍ଧି କରିଥିଲେ ଯେ ନିରୀହ ସାଧାରଣ ଜନତାକୁ ଭ୍ରାନ୍ତ ପଥରେ ପରିଚାଳିତ ନ କଲେ, ସେମାନଙ୍କର ମନସ୍ତତ୍ତ୍ୱର ଗତିକୁ ଅପହୃତ ନ କଲେ ସେମାନଙ୍କଠାରୁ ସାହାଯ୍ୟ ସହାନୁଭୂତି ପାଇବା ଅସମ୍ଭବ । ତେଣୁ ସମଗ୍ର ଜର୍ମାନ ଜାତିର ମନରେ ଏକ ବିଭ୍ରାନ୍ତ ମନୋବୃତ୍ତି ସୃଷ୍ଟି କରିବାକୁ କୁଣ୍ଠା ପ୍ରକାଶ କଲେ ନାହିଁ । ନାନାପ୍ରକାର ପ୍ରଚାର ଦ୍ୱାରା ଏକ ଯୁଦ୍ଧ-ମନୋବୃତ୍ତି-ସମ୍ପନ୍ନ ବାୟୁମଣ୍ଡଳ ସୃଷ୍ଟି କଲେ । ଜର୍ମାନ ଜାତି ପୃଥିବୀର ସର୍ବଶ୍ରେଷ୍ଠ ଜାତି ବୋଲି ଆସ୍ଫାଳନ କରି ତାହାକୁ ପ୍ରତିପାଦିତ କରିବା ପାଇଁ ଏକ ପୃଥିବୀବ୍ୟାପୀ ସମରର ଯୋଜନା କଲେ । ଜାତୀୟ ଉତ୍କର୍ଷତା ପ୍ରତିପାଦନର ଅଭିଳାଷ ସମଗ୍ର ଜର୍ମାନ ଜନତାକୁ ଉଦ୍‌ବୋଧ କଲା । ଫଳରେ ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣବଳୀଦାନ ହେଲା ସାର୍ଥକ । ସଭ୍ୟତା, ସଂସ୍କୃତି, ଶିକ୍ଷା ପ୍ରଭୃତି ମହତ୍ତର ସାମାଜିକ କାର୍ଯ୍ୟ

ପଦ୍ଧତି ଏବଂ ଅନୁଷ୍ଠାନମାନଙ୍କର ଅଗ୍ରଗତିରେ ହେଲା ଗୁରୁତର କ୍ଷତି । ଅର୍ଥନୈତିକ ବିଭ୍ରାଟରେ ସମଗ୍ର ପୃଥିବୀରେ ସୃଷ୍ଟି ହେଲା ସଙ୍କଟସଙ୍କୁଳ ପରିସ୍ଥିତି । ଯେଉଁମାନେ ଯୁଦ୍ଧ ଆରମ୍ଭ କଲେ, ଯେଉଁମାନେ ଯୁଦ୍ଧ କଲେ ଏବଂ ଯେଉଁମାନଙ୍କ ସହିତ ଯୁଦ୍ଧ କଲେ, ସମସ୍ତେ ହେଲେ ଗୁରୁତର କ୍ଷତିଗ୍ରସ୍ତ । କାହାର ତିଳେ ହେଲେ ଲାଭ ହେଲା ନାହିଁ । ଲାଭ ହେଲା ତୃତୀୟ ପକ୍ଷର; ଯେ ଆତ୍ମସ୍ୱାର୍ଥର ସଂରକ୍ଷଣ ଏବଂ ସମୃଦ୍ଧି ପାଇଁ ସେମାନଙ୍କ ଦୁର୍ବଳତାର ନେଲା ପରମ ସୁଯୋଗ । ଏହିପରି ଭାବରେ ପ୍ରଥମ ଏବଂ ଦ୍ୱିତୀୟ ମହାଯୁଦ୍ଧରେ ଦୁର୍ବଳତାର ଯଥେଷ୍ଟ ସୁଯୋଗ ନେଇ ବର୍ତ୍ତମାନ ଆମେରିକା ଶ୍ରେଣୀ-ସ୍ୱାର୍ଥର ପରମ ପୂଜାରୀରୂପେ ସମଗ୍ର ପୃଥିବୀବ୍ୟାପୀ ନ୍ୟସ୍ତସ୍ୱାର୍ଥ ଶୋଷକ ଗୋଷ୍ଠୀର ଶ୍ରେଷ୍ଠ ସହାୟକ, ପାଳକ ଏବଂ ରକ୍ଷକ ବୋଲି ପରିଚିତ । ଆଜି ଠିକ ସେହିପରି ଶ୍ରେଣୀସ୍ୱାର୍ଥକୁ ଜାଗ୍ରତ, ସଜୀବ ଏବଂ ସୌଷ୍ଠବ ରଖିବା ପାଇଁ ଆମେରିକାର ଧନିକ ଶ୍ରେଣୀ ନାନା ଉପାୟରେ ସ୍ୱପ୍ରୀତି ପ୍ରତିପାଦନପ୍ରୟାସୀ ହୋଇଛନ୍ତି । ଗଣତନ୍ତ୍ର ଏବଂ ବ୍ୟକ୍ତି ସ୍ୱାଧୀନତାର ଆଳ ଦେଇ ବାସ୍ତବ ଗଣତନ୍ତ୍ର, ସାମ୍ୟବାଦ ବା ମାନବିକତା ବିରୁଦ୍ଧରେ ଏକ ବାତ୍ୟାମଣ୍ଡଳ ସୃଷ୍ଟି କରିବାରେ ଲାଗିଛନ୍ତି । ବିଭିନ୍ନ ରାଷ୍ଟ୍ରମାନଙ୍କୁ ନାନାପ୍ରକାର ସାହାଯ୍ୟ ଏବଂ ପ୍ରଭାବଦ୍ୱାରା ଆକୃଷ୍ଟ କରି ଜନଜାଗରଣ ବିରୁଦ୍ଧରେ ଏକ ପୃଥିବୀ-ବ୍ୟାପୀ ମନୋଭାବ ସୃଷ୍ଟି କରିବାରେ ଲାଗିପଡ଼ିଛନ୍ତି । କୋରିଆ, ଫର୍ମୋଜା, ପଶ୍ଚିମ ଜର୍ମାନୀ ଓ ଜାପାନ ପ୍ରଭୃତି ଦେଶମାନଙ୍କରେ ସେମାନଙ୍କର ଏତାଦୃଶ ମନୋବୃତ୍ତିର ଯଥେଷ୍ଟ ଅଭାବ ମିଳୁଛି । ଏ ତ ଗଲା ଆନ୍ତର୍ଜାତିକ କ୍ଷେତ୍ରର କଥା । ବିଭିନ୍ନ ଦେଶର ଆଭ୍ୟନ୍ତରୀଣ ପରିସ୍ଥିତିର ପର୍ଯ୍ୟାଲୋଚନା କଲେ ଏବଂ ଶ୍ରେଣୀ-ସମାଜ ଅନ୍ତର୍ଗତ ସମସ୍ତ ବିପ୍ଳବର ବିଶ୍ଳେଷଣ କଲେ, ଆମେ ଠିକ୍ ଏହିପରି

ସମାଧାନରେ ଉପନୀତ ହେବୁ । ଫରାସୀ ବିପ୍ଳବ, ଚୀନର ଜାତୀୟ ବିପ୍ଳବ ଏବଂ ଭାରତର ଜାତୀୟ ବିପ୍ଳବ ପ୍ରଭୃତି ନାନା ଦେଶର ଜାତୀୟ ବିପ୍ଳବ ପ୍ରୟାସ ମନସ୍ତାତ୍ତ୍ୱିକ ପାର୍ଥକ୍ୟରୁ ଉଦ୍ଭୂତ ଥିଲା । ଦେଶର ଶିକ୍ଷିତ ସମାଜ ତଥା ସାଧାରଣ ଜନତା ଯେତେବେଳେ ହୃଦୟଙ୍ଗମ କରନ୍ତି ଯେ କେତେକ ମୁଷ୍ଟିମେୟ ଲୋକ ବା କୌଣସି ବିଦେଶୀ ରାଷ୍ଟ୍ର ନିଜ ସ୍ୱାର୍ଥରକ୍ଷା କରିବାକୁ ନାନା ପ୍ରକାର ଉପାୟରେ ଶୋଷଣ ଏବଂ ଲୁଣ୍ଠନ କରିବା ସଙ୍ଗେ ସଙ୍ଗେ ନିରୀହ ଏବଂ ନିର୍ଦ୍ଦୋଷ ଜନତାକୁ ଅତ୍ୟାଚାରିତ କରୁଛନ୍ତି, ସେତେବେଳେ ସେମାନଙ୍କର ଆସେ ମାନସିକ ପ୍ରତିକ୍ରିୟା । ସେମାନେ ଉତ୍ତ୍ୟକ୍ତ ହୋଇ ଉଠନ୍ତି । ସମଗ୍ର ଦେଶରେ ଖେଳିଯାଏ ଏକ ଉଦ୍ୟକ୍ତ ଏବଂ ଉତ୍ତପ୍ତ ବାୟୁମଣ୍ଡଳ । ଉକ୍ତ ବାୟୁମଣ୍ଡଳର ସୁଯୋଗ ନେଇ ସୁଯୋଗ୍ୟ ଜନନାୟକମାନଙ୍କର ବିଚାର ପରିଚାଳନା ଏତାଦୃଶ ବିଦ୍ରୋହକୁ ଦିଏ ବିଜୟ । ବିଜୟ ପରେ ଆସେ କ୍ଷମତା ଏବଂ ବିଜୟ ପୂର୍ବରୁ ଥାଏ ଆଦର୍ଶ । ବିପ୍ଳବାନ୍ତର ଶାନ୍ତ ପରିସ୍ଥିତିରେ ଶାସନତନ୍ତ୍ର ନିୟନ୍ତ୍ରଣର ଭାର ନ୍ୟସ୍ତ ହୁଏ ନେତୃବୃନ୍ଦଙ୍କ ହସ୍ତରେ । ସେମାନଙ୍କ ପରିଚାଳନା-କୃତିତ୍ୱ ଉପରେ ସମାଜର ଉନ୍ନତି ବା ଅବନତି, ଅଗ୍ରଗତି ବା ନିଶ୍ଚଳତା ନିର୍ଭର କରେ । ଫରାସୀ ବିପ୍ଳବୋତ୍ତର ପରିସ୍ଥିତିର ଅନୁଧ୍ୟାନ କଲେ ଦେଖାଯିବ ଯେ ଉଷ୍ଣ ବାୟୁମଣ୍ଡଳ କ୍ରମେ ଶୀତଳୀକୃତ ହେବା ସଙ୍ଗେ ସଙ୍ଗେ ଶାସକ-ଗୋଷ୍ଠୀର ଉତ୍ସାହ, ଉଦ୍‌ଯୋଗ, ଉତ୍ତେଜନା ଆସ୍ତେ ଆସ୍ତେ ପ୍ରଗତି-ଗତିଶୀଳ ଏବଂ ଗଠନମୂଳକ ହେବା ପରିବର୍ତ୍ତେ ଶ୍ରେଣୀ ସଙ୍ଗଠନ ତଥା ଶ୍ରେଣୀ ପ୍ରାଧାନ୍ୟ ପ୍ରତିଷ୍ଠାରେ ବ୍ୟାପୃତ ହେବାକୁ ଲାଗିଲା । ଏହିପରିଭାବରେ ଅବନତି ପଥରେ ଅନୁକୂଳ ଗତି କରି ଶେଷରେ ନେପୋଲିୟନଙ୍କ ଭଳି ଏକଛତ୍ର ଶାସକଙ୍କ ଆଧିପତ୍ୟ, ଆଦେଶ

ତଥା ଇଙ୍ଗିତରେ ପରିଗ୍ଭଳିତ ହେବାଭଳି ଫରାସୀ ଜନତାର ମାନସିକ ବିପର୍ଯ୍ୟୟ ଆଣିଲା ।

ସେହିପରି ଚୀନ ଦେଶର ଜାତୀୟ ବିପ୍ଳବର ଇତିହାସ ଆଲୋଚନା କଲେ ଦେଖିବା ଯେ, ପ୍ରଥମେ ଚୀନର ଜନତା ଔପନିବେଶିକ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗଠିତ ଶକ୍ତି ପ୍ରୟୋଗ କରି ଭାଗ ଭାଗ ହୋଇଥିବା ଅଞ୍ଚଳମାନଙ୍କୁ ଏକଶାସନାଧୀନ କଲେ । ସେତେବେଳେ ବିଦ୍ରୋହର ଲକ୍ଷ୍ୟ ଥିଲା ସମୂହସ୍ୱାର୍ଥ ସଂରକ୍ଷଣ, ଦାରିଦ୍ର୍ୟ-ମୋଚନ ଏବଂ ଦେଶର ସର୍ବାଙ୍ଗୀନ ଉନ୍ନତି; କିନ୍ତୁ କାଳକ୍ରମେ ଉଦ୍ଦେଶ୍ୟରକ୍ଷାରେ ଘୋର ଅନ୍ତରାୟ ସୃଷ୍ଟି କଲା ଶ୍ରେଣୀସ୍ୱାର୍ଥ ନେତାମାନଙ୍କର ଆତ୍ମକୈନ୍ଦ୍ରିକ ଆଚରଣ, କର୍ମ-ଯୋଜନା ଏବଂ ଶାସନ ପ୍ରଣାଳୀ । ଭିନ୍ନ ଭିନ୍ନ ଅଞ୍ଚଳ ଶାସନ ଭାରପ୍ରାପ୍ତ ବ୍ୟକ୍ତିମାନେ ମଧ୍ୟ ନାନାପ୍ରକାର ଅପ୍ରାସଙ୍ଗିକ ଉପାୟମାନ ଅବଲମ୍ବନ କରି ନିଜର ଧନସମ୍ପଦ ବୃଦ୍ଧି କରିବାକୁ ଲାଗିଲେ । ନିଜର ଭ୍ରାନ୍ତ ସମ୍ମାନ ରକ୍ଷା କରିବାକୁ ଯାଇ ଆବଶ୍ୟକ ହେଲେ କଠୋର ଦଣ୍ଡ ଏବଂ ନିଷ୍ଠୁରତା ଆଚରଣ କରିବାରେ ପରାଙ୍ମୁଖ ହେଲେ ନାହିଁ । ଏହିପରି ଭାବରେ ଅତ୍ୟାଚାର, ଅନାଚାର, ବ୍ୟଭିଚାରପୂର୍ଣ୍ଣ ଚୀନ ଦେଶ ବାହ୍ୟ ଶତ୍ରୁ ଜାପାନର ଲୋଲୁପ ଦୃଷ୍ଟି ଆକର୍ଷଣ କଲା । ସାମ୍ରାଜ୍ୟବାଦ-ରୂପ ନିଶାରେ ଉନ୍ମତ୍ତ ଜାପାନ ଚୀନକୁ ହସ୍ତଗତ କରିବା ପାଇଁ ନାନା ଐନ୍ଦ୍ରଜାଲିକ ଅବସ୍ଥା ଅନୁସରଣ କଲା । ବାହ୍ୟ ଚାପ ଏବଂ ଆଭ୍ୟନ୍ତରୀଣ ଅଶାନ୍ତ ବିଶୃଙ୍ଖଳା ଚୀନ ଜନତା ମନରେ ବିପର୍ଯ୍ୟସ୍ତବୋଧ ସୃଷ୍ଟି କଲା । ଜନତାର ମନସ୍ତତ୍ତ୍ୱର ଧାରା ଜନନାୟକ ଚ୍ୟାଙ୍ଗ୍ କାଇସାକଙ୍କ ବିରୁଦ୍ଧରେ ଛୁଟିଲା । ଜାତୀୟ ବୀରରୂପେ ପୂଜା ପରିବର୍ତ୍ତେ ଜନତା ପ୍ରାଣରେ ଜାଗିଲା ତାଙ୍କ ପ୍ରତି ଘୃଣା ।

ବହୁକାଳ ପରାଧୀନତା ଶୃଙ୍ଖଳାବଦ୍ଧ ଭାରତ ଜନତା ସାମ୍ରାଜ୍ୟ-ବାଦର ସର୍ବଗ୍ରାସୀ ଶକ୍ତି ନିକଟରେ ନତମସ୍ତକ ଥାଇ ସ୍ୱାୟତ୍ତଶାସନର ସ୍ୱପ୍ନ ଦେଖୁଥିଲାବେଳେ ମହାତ୍ମା ଗାନ୍ଧୀଙ୍କ ଭଳି ଶ୍ରେଷ୍ଠ ରାଜନୈତିକ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି ସ୍ୱାଧୀନତା ସଂଗ୍ରାମକୁ ଏକ ନୂତନ ରୂପ ଦେଲେ । ଭାରତ ଜନତା ଜାତୀୟ ମହାଭାବରେ ଅନୁପ୍ରାଣିତ ହୋଇ ବିଦେଶୀ ଶାସନର ଅବସାନ ଲାଗି ଦୃଢ଼ପରିକର ହେଲେ । ନାନା ସ୍ଥାନରେ ପ୍ରକୃତିପ୍ରବଣ ଉତ୍ତେଜିତ ଜନତା ଅବଲମ୍ବନ କଲେ ହିଂସାତ୍ମକ ପ୍ରଣାଳୀ; କିନ୍ତୁ ହିଂସାତ୍ମକ ପ୍ରଣାଳୀରେ ବିପ୍ଳବ କଲାଭଳି ଉପଯୁକ୍ତ ଶକ୍ତି ବା ସାମର୍ଥ୍ୟ ନ ଥିବାରୁ ସେମାନଙ୍କର ଧ୍ୱଂସ ହେବା ସ୍ୱାଭାବିକ । କିନ୍ତୁ ଉତ୍ତେଜିତ ଜନତାର ପ୍ରାକୃତିକ ମାନସିକ ଗତି ସର୍ବଦା ହିଂସାତ୍ମକ ବିପ୍ଳବ ଦିଗରେ ଧାବମାନ ହୁଏ । ଭାରତର ପରଂପରା, ଶିକ୍ଷାପଦ୍ଧତି, ତଥା ସଂସ୍କୃତି ସ୍ପଷ୍ଟଭାବରେ ଭିନ୍ନ ହୋଇଥିବାରୁ ଅହିଂସା ଆନ୍ଦୋଳନକୁ ଜନକ୍ଷୟର ଆଶଙ୍କା ମଧ୍ୟ ଅଳ୍ପ ଥିବାରୁ ସାଧାରଣ ଜନତା ଏହାକୁ ବିଶେଷଭାବେ ପସନ୍ଦ କରିଥିଲେ । ହିଂସାତ୍ମକ ଏବଂ ଅହିଂସାତ୍ମକ ଆନ୍ଦୋଳନ ବିଷୟରେ ଭାରତର ରାଜନୈତିକ କ୍ଷେତ୍ରରେ ନାନା ବାଦ, ପ୍ରତିବାଦ ହେବା ଫଳରେ ସ୍ୱାଧୀନତା ଆନ୍ଦୋଳନର ଶ୍ରେଷ୍ଠ ସଙ୍ଗଠନ କଂଗ୍ରେସ ମଧ୍ୟରେ ଭିନ୍ନ ମତ ସୃଷ୍ଟି ହୋଇଥିଲା । କିନ୍ତୁ ସ୍ୱାଧୀନତା ଆନ୍ଦୋଳନ ପଛରେ ଜାତୀୟ ମହାନୁଭବତା ଥିବାରୁ ସମସ୍ତ ପ୍ରକାର ଆଭ୍ୟନ୍ତରୀଣ ବିଦ୍ୱେଷ ଭାବକୁ ଭୁଲିଯାଇ ସ୍ୱାଧୀନତା ଆନ୍ଦୋଳନରେ ସମଗ୍ର ଦେଶପ୍ରେମୀ ଜନତା ପୂର୍ଣ୍ଣପ୍ରାଣରେ ଭାଗ ନେଇଥିଲେ । ମହାତ୍ମା ଗାନ୍ଧୀଙ୍କର ବିରାଟ ବ୍ୟକ୍ତିତ୍ୱର ପ୍ରଭାବରେ ଅନ୍ୟମାନଙ୍କର ଚିନ୍ତାଧାରା ସଙ୍କୁଚିତ ହୋଇଥିଲା । ଏହିପରି ଭାବରେ ଆଭ୍ୟନ୍ତରୀଣ ପରିସ୍ଥିତି ଥିଲାବେଳେ ଦ୍ୱିତୀୟ ମହାସମରଦ୍ୱାରା ବହୁକ୍ଷତିଗ୍ରସ୍ତ

ବ୍ରିଟିଶ୍ ସାମ୍ରାଜ୍ୟ ନିଜର ବର୍ତ୍ତିଷ୍ଠ କାୟାକୁ ବଞ୍ଚାଇ ରଖିବାପାଇଁ ଶକ୍ତି ଓ ସାମର୍ଥ୍ୟ ପାଇଲା ନାହିଁ । ଏତାଦୃଶ ଦୁର୍ବଳ ଇଂରେଜ ଜାତି ଆନ୍ତର୍ଜାତିକ କ୍ଷେତ୍ରରେ ନିଜର ସମ୍ମାନକୁ ବଞ୍ଚାଇ ରଖିବାକୁ ଏବଂ ଭାରତ ଭଳି ଏକ ବୃହତ୍ ସଜାଗ ଏବଂ ବୈପ୍ଳବିକ ମନୋବୃତ୍ତି ସମ୍ପନ୍ନ ରାଷ୍ଟ୍ରକୁ ନିଜର ଶାସନାଧୀନରେ ରଖିବାର ଦୁଃସାହସ କରିପାରିଲେ ନାହିଁ । ସେମାନେ ଭାରତ ଛାଡ଼ି ଯିବାପାଇଁ ସ୍ୱତଃ ବାଧ୍ୟ ହେଲେ । ଏ ପାଖରେ ମହାତ୍ମାଙ୍କର "ଭାରତଛାଡ଼" ଡାକ ଏବଂ ସେପାଖରେ ସମ୍ଭାଳିବାପାଇଁ ଶାସକ ଜାତିର ଶକ୍ତିର ଅଭାବ ଭାରତକୁ ସ୍ୱାଧୀନତା ଦେଲା । ସ୍ୱାଧୀନତା ପରେ ଶାସନଭାର ଗ୍ରହଣ କଲେ ଜାତୀୟ ଆନ୍ଦୋଳନର ନେତୃବୃନ୍ଦ । ଶାସନ କ୍ଷମତା ହସ୍ତଗତ ହେବା ପୂର୍ବରୁ ନାନା ପ୍ରତିଜ୍ଞା ଓ ପ୍ରତିଶ୍ରୁତି ସାଧାରଣ ଜନତାକୁ ଦେଇଥିଲେ ଯେଉଁ ନେତାମାନେ, ସେମାନେ ନିଜର ପ୍ରତିଶ୍ରୁତି ରକ୍ଷା କରିବାକୁ ଅକ୍ଷମ ହେଲେ । ଶାସନ ଭାର ଆସିବାର ସୂଚନା ପାଇ ବହୁ ସୁବିଧାବାଦୀ ଶ୍ରେଣୀ ସ୍ୱାର୍ଥସମ୍ବଳିତ ବ୍ୟକ୍ତି ଜାତୀୟ ସଂଗଠନ ମଧ୍ୟରେ ସ୍ୱାଧୀନ ସଂଗ୍ରାମର ସୈନିକରୂପେ ପଶି ଶାସନଭାର ଗ୍ରହଣୋତ୍ତର ନାନାପ୍ରକାର ସୁବିଧାସୁଯୋଗ ନିଜପାଇଁ, ଆତ୍ମୀୟ ସ୍ୱଜନଙ୍କ ପାଇଁ ଏବଂ ଶ୍ରେଣୀ ବା ସମ୍ପ୍ରଦାୟ ପାଇଁ ଉଠାଇବାକୁ ଲାଗିଲେ । ସ୍ୱାଧୀନତାର ଶ୍ରେଷ୍ଠ ଲକ୍ଷ୍ୟ ଦାରିଦ୍ର୍ୟ ମୋଚନ ସଙ୍ଗେ ସଙ୍ଗେ ଜୀବନଯାପନର ମୌଳିକ ଆବଶ୍ୟକ ପ୍ରତ୍ୟେକ ନାଗରିକ ନିକଟରେ ସୁପ୍ରାପ୍ୟ କରିବା ସମ୍ଭବପର ହେଲା ନାହିଁ । ଆମ ଦେଶ ପ୍ରଧାନତଃ ଏକ କୃଷିଜୀବୀ ରାଷ୍ଟ୍ର ହୋଇଥିବାରୁ ଏବଂ ଭୂମି ସମସ୍ୟା ଏ ଦେଶର ପ୍ରଧାନ ସମସ୍ୟା ହୋଇଥିବାରୁ ଉକ୍ତ ସମସ୍ୟାର ସମାଧାନ ସ୍ୱାଧୀନ ସରକାରର ପ୍ରଧାନ ଏବଂ ପ୍ରଥମ କର୍ତ୍ତବ୍ୟ ହେବାର କଥା । କିନ୍ତୁ ଶାସନଗୋଷ୍ଠୀ ବହୁପରିମାଣରେ

ନାଂସ୍ତସ୍ୱାର୍ଥ ବ୍ୟକ୍ତିମାନଙ୍କଦ୍ୱାରା ପ୍ରଭାବିତ ହେଉଥିବାରୁ ଏବଂ ଶାସକ ଗୋଷ୍ଠୀ ପୁଞ୍ଜିପତି ଜମିଦାର ପ୍ରଭୃତି ଶୋଷକଗୋଷ୍ଠୀ ସହିତ ବନ୍ଧୁତା କରି ଦେଶର ଅର୍ଥନୈତିକ ଅବସ୍ଥାରେ କୌଣସି ପରିବର୍ତ୍ତନ ନ ଆଣିବାରୁ ଜନସାଧାରଣଙ୍କ ଶ୍ରଦ୍ଧା ଏବଂ ସହିଷ୍ଣୁତା ଅକ୍ଷୁଣ୍ଣ ରଖିପାରିଲେ ନାହିଁ । ଫଳରେ ତାହାଙ୍କ ଅନୁଷ୍ଠାନ ମଧ୍ୟରେ ନାନା ପ୍ରତିକ୍ରିୟା ଦେଖାଦେଲା । ପ୍ରତିଶ୍ରୁତି ରକ୍ଷା ନ କରି ପାରିଥିବା ଅପରାଧକୁ ଯେଉଁମାନେ ହୃଦୟଙ୍ଗମ କଲେ ଏବଂ ଅର୍ଥନୈତିକ ପରିବର୍ତ୍ତନ ଆଣିପାରିଲା ଭଳି ସଂଗଠିତ ଶକ୍ତି ସହିତ ସଂପୃକ୍ତ ନ ଥିବା ଜାଣି ଉକ୍ତ ଅନୁଷ୍ଠାନକୁ ତ୍ୟାଗ କରି ଶାସକ-ଗୋଷ୍ଠୀର କ୍ଷମତା ଅପବ୍ୟବହାରର ତୀବ୍ର ସମାଲୋଚନା କଲେ । ଏହିପରି ଭାବରେ ଦେଶରେ ଆସ୍ତେ ଆସ୍ତେ ଶାସକ-ଗୋଷ୍ଠୀଙ୍କ ବିରୁଦ୍ଧରେ ବଳିଷ୍ଠ ମନୋବୃତ୍ତି ସୃଷ୍ଟି ହେବାକୁ ଲାଗିଲା । ଏତାଦୃଶ ବିରୁଦ୍ଧ ମନୋବୃତ୍ତିର ଅଭିବ୍ୟକ୍ତି ଗତ ସାଧାରଣ ନିର୍ବାଚନ ମଧ୍ୟରେ ଉତ୍ତମରୂପେ ପ୍ରତିପାଦିତ ହୋଇଅଛି । ଭାରତର ଜନତା ନିରକ୍ଷର ଦରିଦ୍ର ଏବଂ ନିଃସ୍ୱ ହୋଇଥିଲେ ମଧ୍ୟ, ସେମାନଙ୍କର ବିଚାର ଶକ୍ତି ପରିସ୍ଫୁଟ ନ ହୋଇଥିଲେ ମଧ୍ୟ ପୂଜ୍ୟ ଅନୁଷ୍ଠାନ ତଥା ପୂଜ୍ୟ ନେତାମାନଙ୍କ ପ୍ରତି ସେମାନେ ଯେଉଁ ଉଦାସୀନତା ବା ଉଗ୍ରତା ପ୍ରଦର୍ଶନ କରିଛନ୍ତି, ସେଥିରୁ ବେଶ ଅନୁମାନ କରି ହେଉଛି, ଭାରତର ଜନତା ଶିକ୍ଷିତ ହୋଇଥିଲେ ଉପସ୍ଥିତ ଶାସନ ନିୟନ୍ତ୍ରଣକାରୀ ରାଜନୈତିକ ଦଳର ପରିଣାମ କଣ ହୋଇଥାଆନ୍ତା । ମହତ ଉଦ୍ଦେଶ୍ୟ ଏବଂ ସାଧୁ ଉଦ୍ୟମ ନେଇ ଅଗ୍ରଗତି କଲାବେଳେ କୌଣସି ଆନ୍ଦୋଳନର ପରିଚାଳକବର୍ଗ ଯେଉଁ ପ୍ରତିଶ୍ରୁତି ଦେଇଥାନ୍ତି, ତାହା ପାଳନ କରିବାରେ କାହିଁକି ସମର୍ଥ ହୁଅନ୍ତି ନାହିଁ, ଏ ବିଷୟ ଭାବିଲାବେଳେ ଆମକୁ ନାନା

ଦୃଷ୍ଟିକୋଣରୁ ବିଗ୍ଚର କରିବାକୁ ହେବ । ପ୍ରଥମତଃ ମାନଙ୍କ ଯେଉଁ ଉପରେ ପରିଚାଳନାର ଭାର ଥାଏ, ସେମାନଙ୍କର ମାନସିକ ଅଭିବୃଦ୍ଧି, ବାସ୍ତବବୋଧ ଦୃଷ୍ଟିକୋଣରୁ ଆପ୍ଲୁତ ହେବା ଆବଶ୍ୟକ । ବିଭିନ୍ନ ବିଷୟର ବିଶ୍ଳେଷଣାତ୍ମକ ସମାଲୋଚନା କରି ବର୍ତ୍ତମାନ ଏବଂ ସୁଦୂର ଭବିଷ୍ୟତରେ ତାହାର ପରିଣତି କଣ ହେବ, ଏ ବିଷୟରେ ଦେଶାତ୍ମବୋଧ ସମାଧାନରେ ଉପସ୍ଥିତ ହେବା କଥା । ତା ପରେ ସେମାନଙ୍କ ଜୀବନରେ ଆଦର୍ଶ ଏବଂ ଅଭ୍ୟାସର ଏକ ସଂଶ୍ଳିଷ୍ଟ ସମନ୍ୱୟ ରଖିବା ସର୍ବାଦୌ ଆବଶ୍ୟକ । ସେମାନଙ୍କର ଚିନ୍ତାଧାରା, କାର୍ଯ୍ୟପ୍ରଣାଳୀ ଏବଂ ମନସ୍ତତ୍ତ୍ୱର ଗତି ଆତ୍ମକୈନ୍ଦ୍ରିକ ହୋଇ ପରସ୍ପର ହେବା ଦରକାର । ସେମାନଙ୍କର ଜ୍ଞାନ ଧାରଣା ତଥା ଅନୁଭୂତିମୂଳକ ହେବା କଥା । କେବଳ ନେତା ବା ପରିଚାଳକ ହୋଇ ଉଚ୍ଚସ୍ଥାନରେ ବସି କେବଳ ସଭାସମିତିରେ ଭାଷଣ ନ ଦେଇ ପ୍ରକୃତ କାର୍ଯ୍ୟକ୍ଷେତ୍ରରେ ଯୋଗ ଦେଇ ଧାରଣା ସହିତ ଅଭିଜ୍ଞତାର ସଂଯୋଗ କଲେ ଧାରଣା ଦୃଢ଼ ହୁଏ । ଧାରଣା ଦୃଢ଼ ହେଲେ ଆତ୍ମନିର୍ଭରଶୀଳତା ବା ଆତ୍ମ-ଆସ୍ଥା ସ୍ୱତଃ ଆସେ । ଆତ୍ମ-ଆସ୍ଥା ଥିଲେ ଯେକୌଣସି ପରିସ୍ଥିତିରେ କାର୍ଯ୍ୟ କରିବା ସହଜ ଏବଂ ସୁଗମ ହୁଏ । ମନୁଷ୍ୟ ଜୀବନ ପୂର୍ଣ୍ଣତାପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ପ୍ରକୃତ ମାନବିକତା ଆସେ । ପ୍ରକୃତ ମାନବିକାଶ ଆଦର୍ଶ ଏବଂ କ୍ଷମତାର ଏକ ସଙ୍ଗତ ଏବଂ ମଧୁର ମିଶ୍ରଣ ଆସେ । ଏହି ମିଶ୍ରଣ ହିଁ ମନୁଷ୍ୟକୁ ପ୍ରତିଶ୍ରୁତିରକ୍ଷା କରିବାରେ ଶକ୍ତି ଓ ସାମର୍ଥ୍ୟ ଦିଏ । କିନ୍ତୁ ଆମର ନେତାମାନେ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ଲାଭରୁ ବଞ୍ଚିତ । ସେଥିଲାଗି ସେମାନେ ପ୍ରତିଶ୍ରୁତିରକ୍ଷା କରି ପାରୁ ନାହାନ୍ତି କି ଆଦର୍ଶ ବି ରକ୍ଷା କରିପାରୁ ନାହାନ୍ତି । ସେମାନେ ଆଦର୍ଶ ରକ୍ଷା କରିବାରେ କ୍ଷମତା ପ୍ରୟୋଗ କରିବା ପରିବର୍ତ୍ତେ କ୍ଷମତାରକ୍ଷା କରିବା ଉଦ୍ଦେଶ୍ୟରେ କ୍ଷମତା

ପ୍ରୟୋଗ କରୁଛନ୍ତି । କ୍ଷମତାର ଏତାଦୃଶ ନ୍ୟସ୍ତାତ୍ମକ ପ୍ରୟୋଗ କେବଳ ସୃଷ୍ଟି କରୁଛି ସାମାଜିକ ପ୍ରତିକ୍ରିୟା । ଉକ୍ତ ପ୍ରତିକ୍ରିୟା ଶ୍ରେଣୀ ସଂକୁଞ୍ଚନରେ ଯଥେଷ୍ଟ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଶ୍ରେଣୀ ଚେତନା, ଜାଗରଣ ତଥା ସଂଘର୍ଷ ଅଭିମୁଖରେ ସମଗ୍ର ଜନତାକୁ ଆଗେଇ ନେଉଛି । ନିଜର ଭ୍ରମ ସଂଶୋଧନ କରିବାରେ ଶକ୍ତି ନ ଆସିବାରୁ ନାନାପ୍ରକାର ଦମନ ପ୍ରଣାଳୀ ଉଦ୍‌ଭାବନ କରୁଛନ୍ତି; କିନ୍ତୁ ସେମାନଙ୍କର ସମସ୍ତ କାର୍ଯ୍ୟ ଗୁରୁତର ବିଦେଶିତବୋଧ ସୃଷ୍ଟି କରୁଛି, ଯାହା ଫଳରେ କି ହୁଏତ ଦେଶର ଅବସ୍ଥା ଅତୀବ ମୋହମୟ ହୋଇପାରେ ।

ଦ୍ୱିତୀୟତଃ ଆମ ନେତାମାନଙ୍କର ବାସ୍ତବ ଅଭିଜ୍ଞତା, ଶାସନତାନ୍ତ୍ରିକ ଦୂରଦୃଷ୍ଟି, ସୁଦୃଢ଼ କାର୍ଯ୍ୟକାରୀ ଶକ୍ତି ନ ଥିବାରୁ ନାନା ଯୋଜନାର କାର୍ଯ୍ୟକାରିତା ସମ୍ପାଦନ କରିବାରେ ଅକ୍ଷମ ହେଉଛନ୍ତି । ସେମାନଙ୍କର ଚିନ୍ତା ସ୍ପଷ୍ଟ ଏବଂ ନିର୍ଦ୍ଦିଷ୍ଟ ହୋଇ ନ ଥିବାରୁ ଅନ୍ୟମାନଙ୍କର ହୃଦ୍‌ବୋଧ ଜାଗ୍ରତ କରିପାରୁ ନାହାନ୍ତି । ସେମାନଙ୍କର ଏପରି ଦୁର୍ବଳତାର ସୁଯୋଗ ନେଉଛନ୍ତି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ । ସେମାନେ ଭୂମି ସଂସ୍କାରର କୌଣସି ଯୋଜନା କଲେ ଜମିଦାର ଏବଂ ଜମିଜମାସହିତ ସମ୍ପୃକ୍ତ ଧନୀ ଏବଂ ପ୍ରଭାବଶାଳୀ ବ୍ୟକ୍ତିମାନେ ତାହା ପଣ୍ଡ କରିବାକୁ ନାନା ଉଦ୍ୟମ କରି ବ୍ୟର୍ଥ କରିଦେଉଛନ୍ତି—ଶିଳ୍ପ-ବୃଦ୍ଧି ବା ଶିଳ୍ପ-ସଂସ୍କାର କରିବାପାଇଁ ବ୍ୟବସ୍ଥା ଅବଲମ୍ବନ କଲେ ଧନୀ ଶିଳ୍ପପତିମାନେ ହସ୍ତକ୍ଷେପ କରି ନେତା-ମାନଙ୍କର ଦୁର୍ବଳତାର ସୁବିଧା ଉଠାଉଛନ୍ତି—ଶାସନତନ୍ତ୍ରରେ କୌଣସି ପରିବର୍ତ୍ତନ ଆଣିବାକୁ ଇଚ୍ଛା କଲେ ଅମଲାତନ୍ତ୍ର ଉପସ୍ଥାପିତ କରୁଛି ଗୁରୁତର ଅନ୍ତରାୟ । ନେତାମାନଙ୍କର ଶାସନଗତ ଅଭିଜ୍ଞତା ଅଳ୍ପ ଥିବାରୁ ଉଚ୍ଚ କର୍ମଚାରୀମାନେ ସେମାନଙ୍କୁ ନାନା ପ୍ରରୋଚନା

କରି ନିଜ ସ୍ୱାର୍ଥସାଧନାରେ ବ୍ୟସ୍ତ ରହୁଛନ୍ତି । ଦେଶର ସାଧାରଣ ଲୋକଙ୍କର ବଳିଷ୍ଠ ମନସ୍ତତ୍ତ୍ୱ ନ ଥିବାରୁ ଶିକ୍ଷା ଏବଂ ମାନସିକ ଶକ୍ତିର ଅଭାବ ଥିବାରୁ ସେମାନେ ଅନ୍ୟାୟ ବିରୁଦ୍ଧରେ ସଂଗଠିତ ଭାବରେ ଜାଗ୍ରତ ହୋଇ ପାରୁନାହାନ୍ତି । ରକ୍ଷଣଶୀଳ ଅମଲାତନ୍ତ୍ର ଦେଶରେ ରକ୍ଷଣଶୀଳ ଅନୁଷ୍ଠାନମାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ଏକଦା ପ୍ରଗତିକାମୀ ନେତାମାନଙ୍କୁ ରକ୍ଷଣଶୀଳତାର କରାଳକବଳରେ ପତିତ ହେବା ଭଳି ଉପାୟମାନ ଉଦ୍‌ଭାବନ କରୁଛନ୍ତି ।

ସେଥିପାଇଁ ଦେଶକୁ ପ୍ରଗତିପଥରେ ପରିଚାଳିତ କରିବାର ଗୁରୁଦାୟିତ୍ୱ ସର୍ବଦା ଦେଶର ଶିକ୍ଷିତ ସମାଜ ଉପରେ ସ୍ୱତଃ ନିହିତ । ସେମାନେ ଦେଶର ସହସ୍ର ସହସ୍ର ଅଶିକ୍ଷିତ ବା ଅର୍ଦ୍ଧ-ଶିକ୍ଷିତ ଜନତାକୁ ମାନବ ସମାଜର ବାସ୍ତବ କଲ୍ୟାଣପଥରେ ଅଗ୍ରଗାମୀ କରାଇବାରେ କର୍ଣ୍ଣଧାର ସଦୃଶ । ପ୍ରକୃତ ଅପ୍ରକୃତ, ବାସ୍ତବ ଅବାସ୍ତବ, ନ୍ୟାୟ ଅନ୍ୟାୟ ପ୍ରଭୃତି ନୈତିକ ମନସ୍ତାତ୍ତ୍ୱିକ ତଥା ମାନସିକ ବିଚାରଧାରାର ବିଶ୍ଳେଷଣ କରି ଜନସମାଜ ସପକ୍ଷରେ ସେମାନଙ୍କ ଦକ୍ଷେ ସର୍ବାଗ୍ରେ ଆଦୃତ ବିଷୟ ପ୍ରତିପାଳନ କରିବା ଶିକ୍ଷା ଓ ଶିକ୍ଷିତ ସମାଜର ମୌଳିକ କର୍ତ୍ତବ୍ୟ । ଦେଶକାଳପାତ୍ର, ପରିସ୍ଥିତି, ବାୟୁମଣ୍ଡଳ ଏବଂ ଘଟଣା ପ୍ରବାହର ବାସ୍ତବ ବିଚାରରେ ନାନା ବ୍ୟକ୍ତିଗତ ଓ ସାମାଜିକ ସମାଧାନରେ ଉପନୀତ ହେବା ଶିକ୍ଷିତ ସମାଜର ଗୁରୁଦାୟିତ୍ୱ । ସମଗ୍ର ମାନବ ସମାଜରେ ମାନବିକତାର ପ୍ରତିଷ୍ଠା ଲାଗି ବାସ୍ତବ ଶିକ୍ଷାର ପ୍ରଚାର ଏବଂ ପ୍ରସାର ମଧ୍ୟ ମୁଷ୍ଟିମେୟ ଶିକ୍ଷିତ ସମାଜର ପରମଧର୍ମ । ଶିକ୍ଷିତ ସମାଜ ସେ ଯେ କୌଣସି ଭିତ୍ତି ଉପରେ ପ୍ରତିଷ୍ଠିତ ହେଉନା କାହିଁକି, ତା'ର ପ୍ରକୃତ କର୍ତ୍ତବ୍ୟରେ ତ୍ରୁଟି କଲେ ଆତ୍ମଘାତି ନୀତି ଅବଲମ୍ବନ କଲା ବୋଲି କହିବାକୁ

ହେବ । ଶିକ୍ଷିତ ବ୍ୟକ୍ତି ପୁଞ୍ଜିପତିର ପୁତ୍ର ହେଉ ବା ଶ୍ରମିକର ପୁତ୍ର ହେଉ, ଜମିଦାରର ପୁତ୍ର ହେଉ ବା କୃଷକର ପୁତ୍ର ହେଉ, ବ୍ରାହ୍ମଣ ପୁତ୍ର ହେଉ ବା ଚଣ୍ଡାଳର ପୁତ୍ର ହେଉ, ପଣ୍ଡିତର ପୁତ୍ର ହେଉ ବା ମୂର୍ଖର ପୁତ୍ର ହେଉ ଯଦି ବାସ୍ତବ ଶିକ୍ଷାଦତ୍ତ ସଦ୍‌ଜ୍ଞାନ ପ୍ରୟୋଗରେ ଆତ୍ମ-ସ୍ୱାର୍ଥର ବାଧା ଆସିବ ବୋଲି ଭାବି ଶିକ୍ଷାର ଅପବ୍ୟବହାର କରେ ତା ହେଲେ ସେ ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ଅପବିତ୍ରତା-ଜନିତ ମାନବିକ ଅଶାନ୍ତି ଚିରଦିନ ଲାଗି ଭୋଗ କରୁଥାଏ ।

ଇତିହାସର ଧାରା ସ୍ପଷ୍ଟଭାବେ କହି ଦିଏ ଯେ, ରକ୍ଷଣ-ଶୀଳତା ଏବଂ ପୁଞ୍ଜିବାଦର ଧ୍ୱଂସ ସ୍ୱତଃ ଏବଂ ସୁନିଶ୍ଚିତ । ସମୟର ଅନନ୍ତ ପ୍ରବାହର ପ୍ରତିକୂଳଗାମୀ ଯେ ହେବ, ତାର ଯେତେ ଶକ୍ତି ଥାଉନା କାହିଁକି, ଉକ୍ତ ପ୍ରବାହର ଅତଳଗର୍ଭରେ ଅବସ୍ଥାନ ହେବା, ତାର ହେବ ଶେଷ ପରିଣତି । ଆମେ ଅତି ଉତ୍ତମରୂପେ ଉପଲବ୍ଧି କରୁଛୁ ଯେ ପୁଞ୍ଜିବାଦ ନିଜକୁ ବଞ୍ଚାଇ ରଖିବା ପାଇଁ ନାନା ଉପାୟମାନ ଉଦ୍‌ଭାବନ କରିବା ସଙ୍ଗେ ସଙ୍ଗେ ବହୁମୁଖୀ ଉଦ୍ୟମରେ ଅବିରତ ବ୍ୟସ୍ତ । ତଥାପି ନିର୍ଦ୍ଦିଷ୍ଟରୂପେ କୁହାଯାଇପାରେ ଯେ ଏହାର ସମାଧାନ ଧ୍ରୁବ ଓ ଅନିବାର୍ଯ୍ୟ । କେବଳ ପୁଞ୍ଜିବାଦର ପ୍ରଥମ ପ୍ରକୃତି ବାସ୍ତବତାର ବ୍ୟତିକ୍ରମ ଜନତାର ଅଗ୍ରଗତିରେ ଅନ୍ତରାୟ ସୃଷ୍ଟି କରୁଛି । ସେଥିଲାଗି ମାନବ ସମାଜର ସଂଯୁକ୍ତ ନୈତିକ ଅର୍ଥନୈତିକ, ଆଧ୍ୟାତ୍ମିକ ଉନ୍ନତିର ଗତି ମନ୍ଥର ହେଉଛି । ଯଦି ପୁଞ୍ଜିବାଦ ଆତ୍ମରକ୍ଷା କରିବା ପାଇଁ ସତର୍କ ନ ହୋଇ ପୃଥିବୀ ବକ୍ଷରେ ସୃଷ୍ଟି କରେ ପ୍ରଳୟ ତାଣ୍ଡବ ଧ୍ୱଂସ, ହେବ ଯାହାର ଶ୍ରେଷ୍ଠ ଅବଦାନ, ତେବେ ପୁଞ୍ଜିବାଦୀ ତ ନିଶ୍ଚୟ ଭସ୍ମସାତ୍ ହେବ; କିନ୍ତୁ ତାହା ସଙ୍ଗେ ସଙ୍ଗେ ପୁଞ୍ଜିବାଦୀ ରାଷ୍ଟ୍ରର ନିରୀହ ଜନତା ଚିରଦିନ ଲାଗି ମାନବସମାଜ ନିକଟରେ ଘୃଣ୍ୟ, ନିନ୍ଦ୍ୟ ଓ ଲାଞ୍ଛିତ ହେଉ-

ଥିବେ ସିନା । ତାହା ସଙ୍ଗେ ସଙ୍ଗେ ମଧ୍ୟ ସମଗ୍ର ପୃଥିବୀର ବିଭିନ୍ନ ରାଷ୍ଟ୍ରମାନଙ୍କର ଯେଉଁ ଗୁରୁତର ଅର୍ଥନୈତିକ, ମାନବିକ ଏବଂ ସାମାଜିକ କ୍ଷତି ହେବ, ତାହାର ପ୍ରଭାବରେ ମାନବ ସଭ୍ୟତା ସଂସ୍କୃତି ହୁଏତ ଧ୍ୱଂସ ହୋଇଯାଇ ଏକ ସଂପୂର୍ଣ୍ଣଭାବେ ନୂତନତ୍ୱ ଗ୍ରହଣ କରିପାରେ । ସେଥିଲାଗି ଶିକ୍ଷିତ ସଂପ୍ରଦାୟ, ପୁଞ୍ଜିପତିଗୋଷ୍ଠୀ ତଥା ରକ୍ଷଣଶୀଳ ଗୋଷ୍ଠୀକୁ ସଜାଗ ଏବଂ ସତର୍କ ରହି ଆତ୍ମାନୁସନ୍ଧାନ ଅନୁତାପ ଏବଂ ଆତ୍ମଶୁଦ୍ଧି ଦ୍ୱାରା ନିଜର ସଂପୂର୍ଣ୍ଣ ପରିବର୍ତ୍ତନ ଆଣି ବାସ୍ତବ ମାନବିକତା ପ୍ରତିପାଦିତ କରି ଅଗ୍ରଗତିଶୀଳ ସମାଜରେ ଅନ୍ୟାନ୍ୟମାନଙ୍କ ସହିତ ସମାନ ଭାବରେ ବଞ୍ଚି ରହିବାକୁ ହେବ । ବର୍ତ୍ତମାନ ସମସ୍ତ ଜନସମାଜ ଏକ ବିଭ୍ରାନ୍ତିସଙ୍କୁଳ ପରିସ୍ଥିତିର ସମ୍ମୁଖୀନ । ନାନା ସ୍ୱାର୍ଥପୂର୍ଣ୍ଣ ବିପରୀତବୋଧ ଜନିତ ସଂଘର୍ଷର ସମ୍ଭାବନା ପ୍ରତିମୂହୂର୍ତ୍ତରେ ଶାନ୍ତିକାମୀ ଜନତାର ଚିତ୍ତକୁ ଉଦ୍‌ବେଳିତ କରୁଛି । ଧନତନ୍ତ୍ର ସମାଜର ବିଲୋପ କାମନା କରି ନିଷ୍ପେସିତ ଜନଶକ୍ତି ସ୍ୱତଃ ଜାଗ୍ରତ ଏବଂ ଏକତ୍ରିତ । ପକ୍ଷାନ୍ତରେ ସର୍ବଗ୍ରାସ୍ୟ ଧନିକ ସମାଜ ଶୋଷଣର ଲିପ୍‌ସା ପରିହାର କରିବାକୁ କୁଣ୍ଠିତ । ସାମ୍ୟ-ମୈତ୍ରୀ-ପ୍ରତିଷ୍ଠା-ପ୍ରୟାସୀ ବୁଦ୍ଧିଜୀବୀ ଗୋଷ୍ଠୀର ସକଳ ପ୍ରଚେଷ୍ଟାକୁ ପଣ୍ଡ କରିବା ପାଇଁ ନିରତ ନିଯୁକ୍ତ । ବାସ୍ତବତା ଏବଂ ଅବାସ୍ତବତା, ମାନବିକତା ଏବଂ ପାଶବିକତା, ସତ୍ୟ ଏବଂ ଅସତ୍ୟର ଏ ତ୍ରିମୂଳ ସଂପର୍କରେ ଯେତେବେଳେ ପୃଥିବୀର ବିଭିନ୍ନ ଦେଶମାନେ ନିର୍ଦ୍ଦିଷ୍ଟ ପକ୍ଷ ବରଣ କରିଛନ୍ତି, ସେତେବେଳେ ଭାରତ ଅବଲମ୍ବନ କରିଛି ସକ୍ରିୟ ନିରପେକ୍ଷତା । ସର୍ବଦା ନିରପେକ୍ଷତା ଏକ ମହତ ଆଦର୍ଶ—ନିରପେକ୍ଷତାହିଁ ହିଁ ଦିଏ ବାସ୍ତବ ନ୍ୟାୟର ବିଗ୍ଭର । ନିରପେକ୍ଷତା ଗଣତନ୍ତ୍ରର ଏକ ପ୍ରଧାନ ଅଙ୍ଗ । ସକ୍ରିୟ ନିରପେକ୍ଷତା ଭଳି ଏକ ମହତ୍ ଆଦର୍ଶ ଉଦ୍‌ବୁଦ୍ଧ ବ୍ୟକ୍ତି ବା ରାଷ୍ଟ୍ରର କର୍ତ୍ତବ୍ୟ

ତଥା ଦାୟିତ୍ୱ ଅତୀବ ଗୁରୁତର । ଅବଶ୍ୟ ଆନ୍ତର୍ଜାତିକ କ୍ଷେତ୍ରରେ ଭାରତ ପରି ଏକ ବିରାଟ ରାଷ୍ଟ୍ରର ପ୍ରଭାବ ସ୍ପଷ୍ଟ ଏବଂ ନିର୍ଦ୍ଦିଷ୍ଟ । ଭାରତର ପରମ୍ପରା, ସଂସ୍କୃତି ଏବଂ ସଭ୍ୟତା ଆଲୋଚନା କଲେ ଆମେ ଦେଖିବା ଯେ, ପ୍ରତ୍ୟେକ ଭାରତୀୟର ଚରିତ୍ର କିଛି ନା କିଛି ଗଣତାନ୍ତ୍ରିକ ଗୁଣରେ ସମୃଦ୍ଧ । ଭାରତୀୟ ଯେତେ ଦରିଦ୍ର ହେଉନା କାହିଁକି, ଯେତେ ଅତ୍ୟାଚରିତ ହେଉନା କାହିଁକି, ସହଜରେ ହିଂସା ପ୍ରଣୋଦିତ ହେବା ତା ପକ୍ଷେ ସମ୍ଭବ ନୁହେଁ । ସହାନୁଭୂତି ଏବଂ ସାହାଯ୍ୟ ମନୋବୃତ୍ତି ମଧ୍ୟ ଭାରତର ଲୋକମାନଙ୍କଠାରେ ଦୁର୍ଲଭ ନୁହେଁ । ସହନଶୀଳତା, ଧୈର୍ଯ୍ୟ ବା ସହିଷ୍ଣୁତା ମଧ୍ୟ ଭାରତୀୟମାନଙ୍କ ନିକଟରେ ଅଭାବ ନାହିଁ । କିନ୍ତୁ ଏ ସମସ୍ତ ସଦ୍‌ଗୁଣ ଥିଲେ ମଧ୍ୟ ନିରପେକ୍ଷତା ଭଳି ମହତ୍ ଆଦର୍ଶ ପାଳନ କରିବା ପାଇଁ ସଂଗଠିତ ଶକ୍ତି ଏବଂ ସମବେତ ଚେଷ୍ଟାର ଅଭାବ ପ୍ରତ୍ୟେକ ବ୍ୟକ୍ତି ଉପଲବ୍ଧି କରୁଛନ୍ତି ।

ପ୍ରାୟ ସପ୍ତମ ଶତାବ୍ଦୀରୁ ଆରମ୍ଭ କରି ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଶେଷ ପର୍ଯ୍ୟନ୍ତ ଭାରତ ନାନା ବାହ୍ୟଶକ୍ତିର ଆକ୍ରମଣ, ଅତ୍ୟାଚାର ଏବଂ ଲୁଣ୍ଠନର ଏକ ପ୍ରକୋଷ୍ଠ ପ୍ରାଙ୍ଗଣରୂପେ ବ୍ୟବହୃତ ହେଉଥିଲା । ତାହା ସଙ୍ଗେ ସଙ୍ଗେ ମଧ୍ୟ ଜୟଚନ୍ଦ୍ର, ମିରଜାଫର ପ୍ରଭୃତି କେତେକ ସ୍ୱାର୍ଥାନ୍ଧ ଭାରତୀୟ ନାନା ଆଭ୍ୟନ୍ତରୀଣ ବିଭେଦ ସୃଷ୍ଟି କରି ସମଗ୍ର ଦେଶବ୍ୟାପୀ ଏକତାକୁ ସ୍ୱପ୍ନଠାରୁ ଅସମ୍ଭବ ମଧ୍ୟ କରି ଦେଇଥିଲେ । ତାଛଡ଼ା ନାନା ଧର୍ମ, ଜାତି ପ୍ରଭୃତି ଶ୍ରେଣୀ ପାର୍ଥକ୍ୟ ଚିନ୍ତାଧାରା, କାର୍ଯ୍ୟ ପ୍ରଣାଳୀ ଏବଂ ବିଚାର ପଦ୍ଧତିର ନାନା ପାର୍ଥକ୍ୟ ପ୍ରଭେଦ ଏବଂ ତାରତମ୍ୟ ସୃଷ୍ଟି କରିଥିଲେ । ଏତାଦୃଶ ବାହ୍ୟ ଏବଂ ଅନ୍ତଃପ୍ରାଣକୁ ଦମନ କରି ସେମାନଙ୍କର ମାନସିକ ଶକ୍ତିର ସ୍ରୋତକୁ ନିମ୍ନଗାମୀ କରାଇଥିଲେ; କିନ୍ତୁ ଶିକ୍ଷାପ୍ରାପ୍ତ

ଜାଗ୍ରତ ଗୋଷ୍ଠୀ ଏ ପରିସ୍ଥିତି ହୃଦୟଙ୍ଗମ କରି ମସ୍ତକ ଉତ୍ତୋଳନ କଲେ । ସେମାନଙ୍କୁ ନାନା ଉପାୟରେ କରଗତ କରିବାର ଉଦ୍ୟମରୁ ଶାସକ ଗୋଷ୍ଠୀ କଦାପି ବିରତ ହେଉ ନ ଥିଲେ । ଫଳତଃ ଶିକ୍ଷା-ଲୋକଦ୍ୱାରା ଆବିଷ୍କୃତ ବାସ୍ତବ ଜୀବନ ତଥ୍ୟ ସାଧାରଣ ଜନତାର ସମୀପବର୍ତ୍ତୀ ହୋଇ ପାରୁ ନ ଥିଲା । କୋଟି କୋଟି ଭାରତୀୟ ଦାରିଦ୍ର୍ୟ ବ୍ୟାଧି, ଅଶିକ୍ଷାର ତୀବ୍ର ଅନ୍ଧକାର ମଧ୍ୟରେ ଆଲୋଚନା କଲାବେଳେ ଆକସ୍ମିକ ଭାବରେ ଆସିଲା ସ୍ୱାଧୀନତା । ଜନତାର ଆତ୍ମ-ନିୟନ୍ତ୍ରଣରେ ଅପାରଗତାର ସୁଯୋଗ ନେଇ ଶାସକଶ୍ରେଣୀ ଆତ୍ମମର୍ଯ୍ୟାଦା ପ୍ରତିଷ୍ଠା ଏବଂ ଆତ୍ମଗୌରବ ବର୍ଦ୍ଧନରେ ସର୍ବଦା ବ୍ୟାପୃତ ରହିଲେ । ଫଳରେ ସାଧାରଣ ଜନତାର ଶିକ୍ଷା, ଦୃଷ୍ଟି-ପରିସର ଏବଂ ଅବବୋଧ କ୍ରମବର୍ଦ୍ଧିଷ୍ଣୁ ହେବା ପରିବର୍ତ୍ତେ ସ୍ଥାଣୁ ହେବାକୁ ଲାଗିଲା । ବାସ୍ତବ ଦୃଷ୍ଟିକୋଣରୁ କୌଣସି ବିଷୟର ବିଚାର ଜନତାପକ୍ଷେ ହେଲା ସଂପୂର୍ଣ୍ଣ ଅସମ୍ଭବ । ଏହାର ସୁଯୋଗ ନେଲେ କେତେକ ଶିକ୍ଷିତ, ଅର୍ଦ୍ଧ-ଶିକ୍ଷିତ ଏବଂ ଅଶିକ୍ଷିତ ଶ୍ରେଣୀ । ଜନତାର ମନସ୍ତତ୍ତ୍ୱ ଧାରାକୁ ଆପଣା ଦିଗରେ ଆକୃଷ୍ଟ କରିବା ପାଇଁ ଉଦ୍‌ବିଗ୍ନ ନାନା ରାଜନୈତିକ ଦଳ ବିଭିନ୍ନ ପ୍ରଚାରର ଆଶ୍ରୟ ନେଲେ । ଜନତା-କଲ୍ୟାଣ କାମନାର କମନୀୟତା ମଧ୍ୟରେ ସ୍ୱାର୍ଥ ଆତ୍ମ-କୈନ୍ଦ୍ରିକତା ପ୍ରଚ୍ଛନ୍ନ ଭାବରେ ନିହିତ ହେଲା । ଆଦର୍ଶ ଏବଂ ଅଭ୍ୟାସ ମଧ୍ୟସ୍ଥ ପାର୍ଥକ୍ୟର ସୀମା ଦିନକୁ ଦିନ ପ୍ରଶସ୍ତ ହେବାକୁ ଲାଗିଲା । ଅତି ଅଳ୍ପ ପାର୍ଥକ୍ୟବିଶିଷ୍ଟ ନାନା ଆଦର୍ଶର ପ୍ରଚାର ଫଳରେ ନିରୀହ ସାଧାରଣ ଜନତା ଇତସ୍ତତଃ ହୋଇ କୌଣସି ବିଷୟରେ ନିର୍ଦ୍ଦିଷ୍ଟ ଧାରଣା କରି ପାରିଲା ନାହିଁ । ସ୍ୱାଧୀନତା ପରି ସାଧାରଣ ନିର୍ବାଚନ ବେଳକୁ ଦେଶରେ ନାନା ସ୍ୱାର୍ଥସନ୍ନିବେଶିତ ବହୁ ରାଜନୈତିକ ଦଳର ଜନ୍ମ ହେଲା । ସ୍ଥାନୀୟ ସମସ୍ୟା ଓ

ପରିସ୍ଥିତିର ସମାଧାନ ପାଇଁ ସମବେତ ଚେଷ୍ଟା କରୁଥିବା ବ୍ୟକ୍ତି-ମାନେ ନାନା ଦଳ ଗଠନ କରି ସାଧାରଣ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସେମାନଙ୍କ ମଧ୍ୟରୁ କଂଗ୍ରେସ, ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟ ଦଳ ଭାରତବ୍ୟାପୀ ଦଳ ହିସାବରେ ପରିଣତ । ଜାତୀୟ ଜାଗରଣ ଏବଂ ସ୍ୱାଧୀନତା ଆନ୍ଦୋଳନ, ଏକ ସଂଗଠିତ ରୂପ ପାଇଥିଲା—ଯେଉଁ ଅନୁଷ୍ଠାନରେ ସେହି ରାଜନୈତିକ ଅନୁଷ୍ଠାନ ଭାରତୀୟ ଜାତୀୟ କଂଗ୍ରେସ ନାମରେ ଅଭିହିତ—ସ୍ୱାଧୀନତା ସଂଗ୍ରାମର ଅଗ୍ରଦୂତରୂପେ ସମସ୍ତ ଦେଶର ସହାନୁଭୂତି, ସାହାଯ୍ୟ ଏବଂ ସହଯୋଗ ପାଇବାପାଇଁ ସମର୍ଥ ହୋଇଥିଲା । ଦେଶପ୍ରେମ ଏବଂ ଜାତୀୟ ଅନୁପ୍ରାଣତାରେ ଉଦ୍‌ବୁଦ୍ଧ ହୋଇ ଅନେକ ଭାରତୀୟ ନାନା ତ୍ୟାଗ ସ୍ୱୀକାର କରି ବହୁ ଦୁଃଖକଷ୍ଟ, ନିର୍ଯ୍ୟାତନା ସହିଥିଲେ ଦେଶକୁ ଦୀର୍ଘ ପରାଧୀନତା-ଶୃଙ୍ଖଳରୁ ମୁକ୍ତ କରିବାପାଇଁ । ସେତେବେଳେ ଉକ୍ତ ଅନୁଷ୍ଠାନରେ ରାଜନୈତିକ ଚେତନତା ବିଦ୍ୟମାନ ଥିଲା । ଦଳର ପ୍ରଥମ ଏବଂ ପ୍ରଧାନ ଲକ୍ଷ୍ୟ ଥିଲା—ରାଜନୈତିକ ପ୍ରଗତି; କିନ୍ତୁ ଦେଶର ସାମୂହିକ କଲ୍ୟାଣପାଇଁ କୌଣସି ନିର୍ଦ୍ଦିଷ୍ଟ ନିୟମ ବା ସଂବିଧାନ ନ ଥିଲା । ଦେଶରେ ଅର୍ଥ-ନୈତିକ ସ୍ୱଚ୍ଛଳତା ଆଣିବାପାଇଁ ଦେଶରେ ଶିକ୍ଷାର ବିସ୍ତାର ଲାଗି କୌଣସି ସୁନିୟନ୍ତ୍ରିତ ଯୋଜନା କଂଗ୍ରେସର ନେତାମାନେ କରି ପାରି ନ ଥିଲେ । ଅନୁଷ୍ଠାନର ସଭ୍ୟମାନେ କେବଳ ମାତ୍ର ଏକ ବାହ୍ୟ ଆଦର୍ଶରେ ଅନୁପ୍ରାଣିତ ହୋଇଥିବାରୁ ବ୍ୟକ୍ତିଗତ ବିକାଶ ଏବଂ ପ୍ରତିଷ୍ଠା ଉତ୍ତମରୂପେ ପ୍ରତିଷ୍ଠିତ ହୋଇ ପାରି ନ ଥିଲା । ନାନା ମତର ଲୋକେ କେବଳ ସ୍ୱାଧୀନତା ଆନ୍ଦୋଳନ ପାଇଁ ଉକ୍ତ ଅନୁଷ୍ଠାନରେ ଏକତ୍ରିତ ହୋଇଥିଲେ । ତେଣୁ ସ୍ୱାଧୀନତା ଆସିଲାପରେ ରାଜନୈତିକ ପରାକାଷ୍ଠାର ପ୍ରାଚୁର୍ଯ୍ୟ କ୍ରମେ ହ୍ରାସ ଲାଭ କଲା ।

ଘୋର ଅତ୍ୟାଚାରିତ ଜନତାର ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନ ହେଲା ଶାସକଗୋଷ୍ଠୀର ଚରମ କର୍ତ୍ତବ୍ୟ। କିନ୍ତୁ ସେ ବିଷୟରେ କଂଗ୍ରେସର କୌଣସି ନିର୍ଦ୍ଦିଷ୍ଟ ଯୋଜନା ନ ଥିବାରୁ କୌଣସି ପରିବର୍ତ୍ତନ ଆଣିବାକୁ କଂଗ୍ରେସ ନେତାମାନେ ହେଲେ ସମ୍ପୂର୍ଣ୍ଣ ଅକ୍ଷମ। ସେମାନଙ୍କର ଅପାରଗତା ଏବଂ ସୁସଂଗତ ରାଜନୈତିକ ମତବାଦର ଅଭାବ ବହୁ ସୁବିଧାବାଦୀଙ୍କୁ ସୁଯୋଗ ଦେଲା। ପ୍ରଥମତଃ କଂଗ୍ରେସ ନେତାମାନେ ଲୋକପ୍ରିୟତା ହରାଇବାର ଆଶଙ୍କାରେ ସର୍ବଦା ଯେ କୌଣସି ଉପାୟରେ ନିଜ ଦଳର ସଂଖ୍ୟା-ବୃଦ୍ଧି କରିବାର ବ୍ୟସ୍ତ ରହିଲେ। କଂଗ୍ରେସ ସରକାରଙ୍କ ଶାସନ ସମୟରେ ସାଧାରଣ ଜନତାର କୌଣସି ପରିବର୍ତ୍ତନ ହୋଇ ନ ଥିବାରୁ ସେମାନେ ସ୍ୱତଃ କଂଗ୍ରେସବିରୋଧୀ ମତ ପୋଷଣ କଲେ। ଅନ୍ୟପକ୍ଷରେ ସୁବିଧାବାଦୀ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଦେଖିଲେ ଯେ ସେମାନଙ୍କ ସ୍ୱାର୍ଥକୁ ବଂଚାଇ ରଖିବାକୁ ହେଲେ କଂଗ୍ରେସ ବ୍ୟତୀତ ଅନ୍ୟ କୌଣସି ରାଜନୈତିକ ଦଳ ଉପଯୁକ୍ତ ହେବ ନାହିଁ। ଏହିପରି ପରିସ୍ଥିତିରେ କଂଗ୍ରେସ ସହିତ ସେମାନଙ୍କର ମିଳନ ହେଲା। ଫଳରେ ଦେଶର କଲ୍ୟାଣ ଏବଂ ପ୍ରଗତି ଲାଗି ଅପାରଗ କଂଗ୍ରେସ ମଧ୍ୟରେ ନାନା ଅତ୍ୟାଚାର ବ୍ୟଭିଚାର ସୃଷ୍ଟି ହେଲା ନିଜର ସ୍ୱାର୍ଥ ସଂରକ୍ଷଣ କରିବା ଲାଗି। କଂଗ୍ରେସର ଯେଉଁମାନଙ୍କ ହସ୍ତରେ ଶାସନ କ୍ଷମତା ରହିଲା, ସେମାନଙ୍କ ମଧ୍ୟରେ ଏବଂ ବାହାରେ ଥିବା କଂଗ୍ରେସ ଲୋକମାନଙ୍କ ମଧ୍ୟରେ ସଦ୍‌ଭାବ ଏବଂ ସହାନୁଭୂତି କ୍ରମେ କମିବାକୁ ଲାଗିଲା। କଂଗ୍ରେସ ଭିତରେ ନାନା ବିଭକ୍ତତା, ଦଳ ମନୋବୃତ୍ତି ଏବଂ ବ୍ୟକ୍ତିଗତ ପ୍ରତିଯୋଗିତା ପ୍ରବେଶ କଲା— ସେଥିପାଇଁ କଂଗ୍ରେସର ଶୀର୍ଷନେତୃବୃନ୍ଦ ନିର୍ଦ୍ଧାରଣ କଲେ ଯେ ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷଙ୍କର ହସ୍ତରେ ବାହ୍ୟ ତଥା ବ୍ୟବସ୍ଥାପକ କ୍ଷମତା

ନ୍ୟସ୍ତ ରହିବ । ଏହା କଂଗ୍ରେସର ଅଧଃପତନର ଏକ ଗୁରୁତର କାରଣ ହେଲା । କଂଗ୍ରେସ ମଧ୍ୟରେ ଏକାଧିପତ୍ୟ ବା ଏକଛତ୍ରବାଦ ସୃଷ୍ଟି ହେଲା । କଂଗ୍ରେସର ସମସ୍ତ ନେତାମାନଙ୍କର ବା ବହୁସଂଖ୍ୟକ ସଦସ୍ୟଙ୍କର ସମ୍ମତିରେ ଯଦି ଏପରି ହୋଇଥାନ୍ତା, ତାହାହେଲେ ସମସ୍ତଙ୍କର ସାହାଯ୍ୟ ଏବଂ ସହାନୁଭୂତି କଂଗ୍ରେସର ଚାଳକଗୋଷ୍ଠୀ ପାଇପାରିଥାନ୍ତେ । କିନ୍ତୁ ଚାଳକଗୋଷ୍ଠୀଦ୍ୱାରା ଏପରି ଏକ ନିଷ୍ପତ୍ତି ହୋଇଥିବାରୁ ଏହା ଗଣତନ୍ତ୍ର ବିରୁଦ୍ଧ କାର୍ଯ୍ୟ ବୋଲି ବିଚାର କରାଯାଇଛି । କୌଣସି ରାଜନୈତିକ ଦଳର ଗତି ଏପରି ହେଲେ ସେ ଦଳ ଆପେ ଆପେ ରକ୍ଷଣଶୀଳ ଦଳରେ ପରିଣତ ହୁଏ । ରକ୍ଷଣଶୀଳ ଦଳକୁ ମୁଷ୍ଟିମେୟ ରକ୍ଷଣଶୀଳ ବ୍ୟକ୍ତିଙ୍କ ବ୍ୟତୀତ ଅନ୍ୟ କେହି ପସନ୍ଦ କରନ୍ତି ନାହିଁ; କିନ୍ତୁ ଏତାଦୃଶ ରକ୍ଷଣଶୀଳ ଦଳ ନିରୀହ ଜନତାକୁ ବିପଥଗାମୀ କରାଇ, ସେମାନଙ୍କର ମନସ୍ତତ୍ତ୍ୱର ଗତିକୁ ଧ୍ୱଂସ କରି କ୍ଷମତା ହାସଲ କରିପାରିଛନ୍ତି । ନ୍ୟାୟ, ସତ୍ୟ ଏବଂ ବାସ୍ତବ ରାଜନୈତିକ ନୈତିକତା ଦୃଷ୍ଟିକୋଣରୁ ବିଚାର କଲେ କଂଗ୍ରେସ ପରି ଏକ ରକ୍ଷଣଶୀଳ ରାଜନୈତିକ ଦଳର ପତନ ସୁନିଶ୍ଚିତ । ଯେତେ ଦିନ ଜନସାଧାରଣଙ୍କର ବାସ୍ତବ ଶିକ୍ଷାର ଅଭାବ ଥିବ, ଯେତେ ଦିନ ସେମାନେ ବିଭିନ୍ନ ସମସ୍ୟାର ହୃଦୟଙ୍ଗମ କରି ସମାଧାନରେ ଉପନୀତ ହେଲାଭଳି ଉପଯୁକ୍ତ ହୋଇ ନ ଥିବେ—ଯେତେ ଦିନ ଗଣତନ୍ତ୍ର ନାମରେ ନାନା ପ୍ରତିକ୍ରିୟାଶୀଳ ଏବଂ ଶୋଷକ-ଗୋଷ୍ଠୀ ସାଧାରଣ ଜନତାର ଅଜ୍ଞାତର ସୁଯୋଗ ନେଉଥିବେ—ହୁଏତ ସେତେଦିନ ପର୍ଯ୍ୟନ୍ତ କଂଗ୍ରେସ ଭାରତର ରାଜନୀତି କ୍ଷେତ୍ରରେ ବଞ୍ଚିରହିପାରେ; କିନ୍ତୁ ଧନତନ୍ତ୍ର ସମାଜର ବିଲୋପ ଏବଂ ଜନତନ୍ତ୍ର ବା ମାନବତନ୍ତ୍ର ସମାଜର ଉଦୟ ସଙ୍ଗେ ସଙ୍ଗେ ଏହାର କୌଣସି ସତ୍ତା ରହି ନ ପାରେ ।

ସ୍ୱାଧୀନ ଭାରତର ରାଜନୈତିକ ଆକାଶରେ ଦ୍ୱିତୀୟ ତାରକା ଭାରତୀୟ ସୋସାଲିଷ୍ଟ ପାର୍ଟି । ଏ ଦଳର ରାଜନୈତିକ ପରଂପରା ବହୁପରିମାଣରେ ଜାତୀୟ ସ୍ୱାଧୀନତା ଆନ୍ଦୋଳନ ସହିତ ସଂଶ୍ଳିଷ୍ଟ । ମହାତ୍ମା ଗାନ୍ଧୀଙ୍କର ବ୍ୟକ୍ତିତ୍ୱ ତଥା ଆଦର୍ଶ ମଧ୍ୟ ଏମାନଙ୍କୁ ବହୁପରିମାଣରେ ଅନୁପ୍ରାଣିତ କରିଥିଲା । ଏ ଦଳର ନେତାମାନେ ମାର୍କସୀୟ ରାଜନୈତିକ ଦର୍ଶନର ବହୁ ଆଲୋଚନା କରି ଭାରତୀୟ ସଂସ୍କୃତି ଏବଂ ପରଂପରା ସହିତ ଖାପଖାଇଲା ଭଳି ଏକ ରାଜନୈତିକ ମତବାଦ ସୃଷ୍ଟି କରିଥିଲେ । ଶକ୍ତିପୂର୍ଣ୍ଣ ଗଣତାନ୍ତ୍ରିକ ଉପାୟରେ ଉପସ୍ଥିତ ସମାଜର ସାମୂହିକ ପରିବର୍ତ୍ତନ କରି ସମାଜତନ୍ତ୍ର ପ୍ରତିଷ୍ଠା କରିବାର ପ୍ରୟାସ ନେଇ ଏମାନେ ନିଜ ଦଳକୁ ଗଣତାନ୍ତ୍ରିକ ସାମ୍ୟବାଦ ଦଳ ବୋଲି ମଧ୍ୟ ପରିଚୟ ଦିଅନ୍ତି । ଏମାନଙ୍କର ନିର୍ଦ୍ଦିଷ୍ଟ ଯୋଜନା ଏବଂ କାର୍ଯ୍ୟକ୍ରମ ମଧ୍ୟ ଗତ ସାଧାରଣ ନିର୍ବାଚନ ବେଳେ ଦେଶର ଜନତା ସମ୍ମୁଖରେ ଉପସ୍ଥାପିତ କରାହୋଇଥିଲା । ଏମାନେ କ୍ରମବର୍ଦ୍ଧମାନରେ ସମୟ ଏବଂ ପରିସ୍ଥିତି ଦୃଷ୍ଟିକୋଣରୁ ସହଯୋଗମୂଳକ, ଗଠନମୂଳକ ଏବଂ ସଂଘର୍ଷମୂଳକ ପନ୍ଥା ଅନୁସରଣ କରିବା ଶ୍ରେଣୀ ସଂଘର୍ଷ ଲାଗି ଆବଶ୍ୟକ ବୋଲି ବିଶ୍ୱାସ କରନ୍ତି । ବ୍ୟବସ୍ଥାପକ ବିରୋଧ ସଙ୍ଗେ ସଙ୍ଗେ ଜନତା କଲ୍ୟାଣବିରୁଦ୍ଧ ଯେ କୌଣସି କର୍ମସୂଚୀକୁ କାର୍ଯ୍ୟରେ ପରିଣତ କରିବା ପଥରେ ନିଜର ଶକ୍ତି ଉପଯୋଗୀ ଅନ୍ତରାୟ ସୃଷ୍ଟି କରିବା ପାଇଁ ଏମାନେ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ଉପସ୍ଥିତ ଶାସକମାନଙ୍କ ଦ୍ୱାରା ପରିକଳ୍ପିତ କୌଣସି ଯୋଜନା ଦେଶହିତଦୃଷ୍ଟିରୁ ଗ୍ରହଣ ଉପଯୋଗୀ ବୋଲି ବିବେଚିତ ହେଲେ ତାହାର ପୂର୍ଣ୍ଣାଙ୍ଗ ପ୍ରୟୋଗ ଲାଗି ମଧ୍ୟ ଏମାନେ ସରକାରଙ୍କ ସହିତ ସହଯୋଗ କରିବାରେ ପରାଙ୍ମୁଖ ହୁଅନ୍ତି ନାହିଁ । ଏମାନଙ୍କର ବିଶ୍ୱାସ, ପ୍ରତ୍ୟେକ

ସମାଜିକ ସମସ୍ୟାର ସମାଧାନରେ ଗଣତାନ୍ତ୍ରିକ ବିଚାର ଧାରା ଦୃଷ୍ଟିକୋଣରୁ ଉପନୀତ ହେବା ଗଣତାନ୍ତ୍ରିକ ସାମ୍ୟବାଦର ଚରମ ଲକ୍ଷ୍ୟ । ଅବଶ୍ୟ ରାଜନୈତିକ ମତବାଦ ଦୃଷ୍ଟିକୋଣରୁ ବିଚାର କଲେ ଏହାର ସ୍ଥାନ ବହୁ ଉଚ୍ଚରେ । ଦେଶର ମୁଷ୍ଟିମେୟ ଶିକ୍ଷିତ ସମାଜକୁ ଏହା ଉତ୍ତମରୂପେ ଆକୃଷ୍ଟ କରିପାରେ । ଗୋଟିଏ ରାଜନୈତିକ ଦର୍ଶନ ବା ଆଦର୍ଶବାଦ ଦୃଷ୍ଟିରୁ ଏହାର ଯଥେଷ୍ଟ ଉପାଦେୟତା ନିଶ୍ଚୟ ଅଛି । ଶାନ୍ତିପୂର୍ଣ୍ଣ ଉପାୟରେ ସାମ୍ୟବାଦ ପ୍ରତିଷ୍ଠା କଳ୍ପନାତୀତ ଭାବରେ ସର୍ବଶ୍ରେଷ୍ଠ ଗୁରୁତର ଦାୟିତ୍ୱ । ଏ ଦାୟିତ୍ୱକୁ କାର୍ଯ୍ୟରେ ପରିଣତ କରିବାକୁ ହେଲେ ବହୁ ତ୍ୟାଗ ସ୍ୱୀକାର କରିବାକୁ ହେବ; ବହୁ ଦୁଃଖ କଷ୍ଟ, ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ହେବ । ଦଳର ପ୍ରତ୍ୟେକ ନେତା ବା କର୍ମୀଙ୍କୁ ହୁଏତ ସମଗ୍ର ଜୀବନ ନାନା ଦୁଃଖ, ଦୁର୍ବିପାକ ମଧ୍ୟରେ ଅତିବାହିତ କରିବାକୁ ହେବ । ଭାରତ ଭଳି ଏକ କୃଷିପ୍ରଧାନ ଦେଶରେ, ଯେଉଁଠି କି ବହୁସଂଖ୍ୟକ ଲୋକ ଦରିଦ୍ର, ଅତ୍ୟାଚାର, ଅଶିକ୍ଷା ପ୍ରଭୃତିର ତୀବ୍ର କଷାଘାତରେ ସର୍ବଦା ନିମ୍ନମୁଖ, ଯେଉଁ ଦେଶରେ ଅଧିକାଂଶ ଅଧିବାସୀ ଅନ୍ଧକାରମୟ ପଲ୍ଲୀକୋଣରେ ବାସ କରନ୍ତି, ସେ ଦେଶର ଜନସାଧାରଣ ହୃଦୟରେ ବାସ୍ତବବୋଧର ଉଦ୍ରେକ କରିବା ଏବଂ ନ୍ୟାୟ ଅନ୍ୟାୟ, ଭଲ ମନ୍ଦ, ଶୋଷଣ ସହଯୋଗ ପ୍ରଭୃତି ନାନା ସାମାଜିକ ବିଷୟରେ ବାସ୍ତବ ଶିକ୍ଷା ଦେବା ଏକ ସହଜସାଧ୍ୟ ସମସ୍ୟା ନୁହେଁ । ଯେଉଁ ଦେଶର ନିରନ୍ନ, ରୁଗ୍ଣ ଜନତା ନିରନ୍ତର ଦାରିଦ୍ର୍ୟପ୍ରପୀଡ଼ିତ ହେଲେହେଁ ସେମାନଙ୍କର ଶୋଚନୀୟ ଅବସ୍ଥା ପାଇଁ ଈଶ୍ୱର ବା ଭାଗ୍ୟ ଦାୟୀ ବୋଲି କହନ୍ତି, ଯେଉଁ ଦେଶର ଜନସାଧାରଣଙ୍କ ମଧ୍ୟରୁ ଅନେକ ନିଜର ନିର୍ବାଚନୀ ଶକ୍ତିର ମହତ୍ତ୍ୱ ଉପଲବ୍ଧି କରି ନ ପାରି ନାନା ଚକ୍ରାନ୍ତବଶୀଭୂତ

ସ୍ୱାମୀସ୍ୱ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କ ଦ୍ୱାରା ପ୍ରଭାବିତ ହୋଇ ନିଜକୁ ଦାସତ୍ୱ ଶୃଙ୍ଖଳରେ ଆବଦ୍ଧ ରଖିବାରେ ଅତୃପ୍ତି ଲାଭ କରନ୍ତି, ସେ ଦେଶର ସହସ୍ର ସହସ୍ର ସାମାଜିକଙ୍କ ପ୍ରାଣରେ ସାମାଜିକତା ଆଣିବା ଅତୀବ ଦୁରୂହ । ସାମାଜିକ ପରିବର୍ତ୍ତନ ଆଣିବାକୁ ହେଲେ ଏପରି ପନ୍ଥା ଅବଲମ୍ବନ ବହୁ ସମୟସାପେକ୍ଷ । ସାଧାରଣ ଜନତା ମଧ୍ୟରୁ ଅଧିକାଂଶଙ୍କୁ ବାସ୍ତବ ବିଷୟବୋଧ ସ୍ତରକୁ ନ ଆଣିଲେ କୃତକାର୍ଯ୍ୟ ହେବା ସମ୍ଭବପର ନୁହେଁ । ମନୁଷ୍ୟ ସମାଜ ଆର୍ଥିକ ପ୍ରଗତି ଦିଗରେ ଯେତେଦୂର ଅଗ୍ରଗାମୀ ହୋଇ ପାରିଛି, ମାନସିକ ବା ନୈତିକ ପ୍ରଗତି ଦିଗରେ ଅପେକ୍ଷାକୃତ କ୍ଷୁଦ୍ରତର ଅଗ୍ରଗତି କରିଛି । ଆତ୍ମକୈନ୍ଦ୍ରିକ ସ୍ୱାର୍ଥପରତା ବହୁପରିମାଣରେ ଆଜିର ମାନବ ସମାଜକୁ ନିଜର କବଳରୁ ମୁକ୍ତି ଦେଇ ନାହାନ୍ତି । ତେଣୁ ଶାନ୍ତିପୂର୍ଣ୍ଣ, ଗଣତାନ୍ତ୍ରିକ ବା ସହଯୋଗମୂଳକ ଉପାୟରେ ସାମାଜିକ ପରିବର୍ତ୍ତନ ଆଣିବାକୁ ହେଲେ ସାମାଜିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ପରିବର୍ତ୍ତନ ଆଣିବା ସର୍ବାଦୌ ଆବଶ୍ୟକ । ସେଥିଲାଗି ଯେଉଁ ଦଳ ଏପରି ମହତ୍ ଆଦର୍ଶରେ ଉଦ୍‌ବୁଦ୍ଧ, ସେ ଦଳର ନେତୃବୃନ୍ଦ, ପରିଚାଳକ-ଗୋଷ୍ଠୀ ତଥା କର୍ମୀ ସମାଜ ସମସ୍ତଙ୍କର ହୃଦୟ ଜନକଲ୍ୟାଣ କାମନାରେ ଅନୁପ୍ରାଣିତ ହେବା ସଙ୍ଗେ ସଙ୍ଗେ କଳ୍ପିତ ସମାଜର ବାସ୍ତବ ସାମାଜିକ ରୂପେ ନିଜକୁ ପ୍ରସ୍ତୁତ କରିବା ଏକାନ୍ତ ଆବଶ୍ୟକ । ଯଦି ସେମାନେ ନିଜର କର୍ମସୂଚୀର ବାସ୍ତବ ପ୍ରୟୋଗ ଦ୍ୱାରା ଦେଶବାସୀଙ୍କୁ ଆଦର୍ଶର ପରାକାଷ୍ଠା, ତଥା ଆଦର୍ଶ ଏବଂ ଅଭ୍ୟାସ ମଧ୍ୟସ୍ଥ ଦୀର୍ଘ ଦୂରତ୍ୱର ଅବସାନ ଲାଗି ଅକ୍ଳାନ୍ତ ଉଦ୍ୟମର ପରିଚୟ ନ ଦିଅନ୍ତି, ତା ହେଲେ ଗଣତାନ୍ତ୍ରିକ ସାମ୍ୟବାଦ ଭଳି ମହତ ଆଦର୍ଶର ପ୍ରହସନ ବ୍ୟତୀତ ଅନ୍ୟ କିଛି କରୁ ନାହାନ୍ତି ବୋଲି ଜନ-

ସାଧାରଣଙ୍କ ମନରେ ଧାରଣା ଜନ୍ମିବା ମାତ୍ରେ ରାଜନୀତି କ୍ଷେତ୍ରରେ ପରିବର୍ତ୍ତନ ଲାଗି ସେମାନେ ଅଗ୍ରସ୍ତ ହେବେ ।

ଭାରତବ୍ୟାପୀ ତୃତୀୟ ରାଜନୈତିକ ଦଳ ଭାରତୀୟ କମ୍ୟୁନିଷ୍ଟ ପାର୍ଟି । କେବଳ ଭାରତବର୍ଷରେ ନୁହେଁ, ସମଗ୍ର ପୃଥିବୀର ବିଭିନ୍ନ ଦେଶମାନଙ୍କରେ ଏ ଦଳର ସଂଗଠନ ଅଛି । ସେମାନଙ୍କର ଏକ ସ୍ପଷ୍ଟ ରାଜନୈତିକ ମତବାଦ ଥିବା ସଙ୍ଗେ ସଙ୍ଗେ ଲକ୍ଷ୍ୟ ହାସଲ ପାଇଁ ମଧ୍ୟ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅଛି । ସେମାନଙ୍କର ବିଶ୍ୱାସ ବିପ୍ଳବ, ବିଦ୍ରୋହ ଏବଂ ଆନ୍ଦୋଳନ ଫଳରେ ନ୍ୟସ୍ତସ୍ୱାର୍ଥ ପୁଞ୍ଜିପତି ଶାସନଗୋଷ୍ଠୀକୁ ଦୁର୍ବଳ କରି ଚିରଶୋଷିତ କର୍ମଜୀବୀ ସମାଜ ନିଜର ଶାସନତନ୍ତ୍ର ନିଜେ ନିୟନ୍ତ୍ରଣ କରିବାର କ୍ଷମତା ଏବଂ ଅଧିକାର ନିଜେ ହାସଲ କରି ପାରିବ । ତୁଷ୍ଟିଜନକ ମନୋବୃତ୍ତିକୁ ସେମାନେ ଆଦୌ ପସନ୍ଦ କରନ୍ତି ନାହିଁ । କାରଣ ଶୋଷିତ ଶାସିତ ଶ୍ରେଣୀର ଏତାଦୃଶ ମନୋବୃତ୍ତିର ସୁଯୋଗ ସୁବିଧା ନେଇ ନିଜର ସ୍ୱାର୍ଥକୁ ବଞ୍ଚାଇ ରଖିବାକୁ ରକ୍ଷଣଶୀଳ ଶୋଷକ ଗୋଷ୍ଠୀ କଦାପି ପରାଙ୍ମୁଖ ହୁଅନ୍ତି ନାହିଁ । ସେମାନେ ଜାଣି ଜାଣି ଦେଶର ସମସ୍ତ ଜନତାକୁ ଦୁଃଖ, ଦାରିଦ୍ର୍ୟ, ଅଶିକ୍ଷା ମଧ୍ୟରେ ନିଷ୍ପେଷିତ କରି ଏବଂ ସେମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରି, ଆତ୍ମ-ଗରିମା ବର୍ଦ୍ଧନରେ ତତ୍ପର ରହନ୍ତି । ସେଥିଲାଗି ଏତାଦୃଶ ବିଭ୍ରାନ୍ତ ମନୋବୃତ୍ତିର ବିଲୋପ ସାଧନ ସେମାନଙ୍କର ଚରମ ଲକ୍ଷ୍ୟ । ଉପସ୍ଥିତ ଶାସକ-ଗୋଷ୍ଠୀର କୌଣସି କାର୍ଯ୍ୟକ୍ରମ ବା ଯୋଜନାରେ ସହଯୋଗ କରିବାକୁ ସେମାନେ ପସନ୍ଦ କରନ୍ତି ନାହିଁ । ସମାଜର ସାମୂହିକ ପରିବର୍ତ୍ତନର ପରିକଳ୍ପନା ସଙ୍ଗେ ସଙ୍ଗେ ଅର୍ଥନୈତିକ ସଂସ୍ଥାର ପରିବର୍ତ୍ତନ ପ୍ରଥମ କର୍ତ୍ତବ୍ୟ ବୋଲି ସେମାନେ ବିଚାରନ୍ତି । ସେମାନଙ୍କର ଧାରଣା, ମନୁଷ୍ୟ କ୍ଷୁଧାଜ୍ୱାଳାରୁ ରକ୍ଷା ନ ପାଇଲେ, ବାସଗୃହ ଏବଂ ପରିଧାନ ନ

ପାଇଲେ ସାମାଜିକ ଜୀବନଯାପନ ତା ପକ୍ଷେ ସଂପୂର୍ଣ୍ଣ ଅସମ୍ଭବ। ଦେଶର ଅର୍ଥନୈତିକ ସାମର୍ଥ୍ୟ ଦୃଷ୍ଟିରୁ ପ୍ରତ୍ୟେକ ବ୍ୟକ୍ତି ତାହାର ଅତ୍ୟାବଶ୍ୟକୀୟ ପଦାର୍ଥମାନ ଲାଭ ନ କଲେ ଉତ୍ତରୋତ୍ତର ଉନ୍ନତି ଲାଭ କରିବା ଅତୀବ ଅସମ୍ଭବ। ସେମାନେ କହନ୍ତି, ଦେଶର ତଥା ସମଗ୍ର ମାନବ ଜାତିର କଲ୍ୟାଣପ୍ରୟାସୀ କର୍ମଜୀବୀ ସମାଜ ବ୍ୟକ୍ତିଗତ ବିକାଶଲାଗି ସମାନ ସୁବିଧା ଏବଂ ସୁଯୋଗ ନ ପାଇଲେ ପୃଥିବୀ-ବ୍ୟାପୀ ଶାନ୍ତି, ଶୃଙ୍ଖଳା, ସୁଖସ୍ୱାଚ୍ଛନ୍ଦ୍ୟ ସ୍ୱପ୍ନଠାରୁ ଅସମ୍ଭବ। ସେଥିଲାଗି ଗୋଟିଏ ବା ଦୁଇଟି ରାଷ୍ଟ୍ର ମଧ୍ୟରେ ସୀମାବଦ୍ଧ ନ ରଖି ସମଗ୍ର ପୃଥିବୀ ବ୍ୟାପୀ କର୍ମଜୀବୀ ଆନ୍ଦୋଳନକୁ ବଞ୍ଚାଇ ରଖିବାକୁ ସେମାନେ ଅଦମ୍ୟ ଉଦ୍ୟମ ଚଳାଇଛନ୍ତି। ସାମାଜିକ ଦ୍ୱନ୍ଦ୍ୱବାଦର ବିଶ୍ଳେଷଣ ଏବଂ ବାସ୍ତବବୋଧର ପ୍ରତିପାଦନ ସଙ୍ଗେ ସଙ୍ଗେ ଇତିହାସର ଅର୍ଥନୈତିକ ବ୍ୟାଖ୍ୟାକରଣ ସେମାନଙ୍କର ରାଜନୈତିକ ବିଶ୍ୱାସ ଏବଂ କର୍ମ ଯୋଜନାକୁ ଏକ ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ କରୁଛନ୍ତି। ଶ୍ରେଣୀ ସମାଜରେ ସାମୁହିକ ମାନବ କଲ୍ୟାଣର ପୂର୍ଣ୍ଣାଙ୍ଗ ବିକାଶ ସଂପୂର୍ଣ୍ଣ ଅସମ୍ଭବ ବୋଲି ସେମାନଙ୍କର ବିଶ୍ୱାସ। ତେଣୁ ଲକ୍ଷ୍ୟ ହାସଲ ପାଇଁ ଶ୍ରେଣୀ ସଂଘ ସେମାନଙ୍କର ଶ୍ରେଷ୍ଠ ଅସ୍ତ୍ର। ଶ୍ରେଣୀ ସଂଘର୍ଷର ଅର୍ଥ ନୁହେଁ ଯେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଧ୍ୱଂସ ସାଧନ। ସେମାନେ ଭାବନ୍ତି, ମାନବ ସମାଜର ସଂଖ୍ୟାଗରିଷ୍ଠ କର୍ମଜୀବୀ ଶ୍ରେଣୀ ପ୍ରଥମେ କ୍ଷମତା ନେଇ ଦେଶର ଶିକ୍ଷା, ଅର୍ଥନୀତି ପ୍ରଭୃତି ଅତ୍ୟାବଶ୍ୟକୀୟ ସାମାଜିକ ଅନୁଷ୍ଠାନର ପରିବର୍ତ୍ତନ କଲେ ଦେଶର ସମସ୍ତ ଶ୍ରେଣୀର ଲୋକଙ୍କର ବାସ୍ତବବୋଧ ଆସିବ ଏବଂ ସେତେବେଳେ ସମସ୍ତେ ଏକ ଲକ୍ଷ୍ୟରେ ସମଗ୍ର ମାନବ ଜାତିର ଅଭିବୃଦ୍ଧି ମାର୍ଗରେ ଅଗ୍ରଗାମୀ ହେବେ। ତେଣୁ ଯେତେ ଦିନ ପର୍ଯ୍ୟନ୍ତ ଦେଶର ଅଧିକାଂଶ ଲୋକଙ୍କର ବାସ୍ତବବୋଧ ନ ଆସିଛି, ତା

ମଧ୍ୟରେ ଯଦି ସେମାନଙ୍କୁ ନିଜମତ ବ୍ୟକ୍ତ ବା କର୍ମସୂଚୀର ପ୍ରୟୋଗ ଲାଗି ସ୍ୱାଧୀନତା ଦିଆଯାଏ, ତା ହେଲେ ହୁଏତ ଆତ୍ମକେନ୍ଦ୍ରିକତାର ପ୍ରଭାବରେ ସେମାନେ ଦେଶର ନିରୀହ ଜନତାର ମନସ୍ତତ୍ତ୍ୱକୁ ଅନାୟାସରେ ବଦଳାଇ ଦେଶ-କଲ୍ୟାଣକାମୀ ଶୋଷିତ ଶାସକ ସଂସ୍ଥା ବିରୁଦ୍ଧରେ ପ୍ରତିବିପ୍ଳବ ସୃଷ୍ଟି କରି ପାରନ୍ତି । ସେଥିଲାଗି ଅବସ୍ଥାନ୍ତର କାଳୀନ ସର୍ବହରା ଅଧିନାୟକତ୍ୱ ସର୍ବାଦୌ ଆବଶ୍ୟକ । ସୋସାଲିଷ୍ଟ ପାର୍ଟି ଭଳି ଏ ପାର୍ଟିର ମଧ୍ୟ ଦାୟିତ୍ୱ ଅତି ଅଧିକ । ଏ ଦଳର ନେତା ଓ କର୍ମୀମାନେ ପ୍ରତ୍ୟେକଙ୍କର ସୁସ୍ପଷ୍ଟ ବିଷୟ ଥିବା ସଙ୍ଗେ ସଙ୍ଗେ ପରିମାର୍ଜିତ ଦୃଷ୍ଟିକୋଣ ପ୍ରଶସ୍ତ ଦୃଷ୍ଟିକୋଣ ପରିସର ଗଭୀର ଦ୍ୱେତ୍ୱାତ୍ମକ ଜ୍ଞାନ ପ୍ରବଳ କାର୍ଯ୍ୟକାରିକା ଶକ୍ତି; ତ୍ୟାଗ ସେବା ଓ ସହନଶୀଳତା ଯଥେଷ୍ଟ ପରିମାଣରେ ଥିବା ଆବଶ୍ୟକ । ଏ ଭଳି ଏକ ଗୁରୁତର ଦାୟିତ୍ୱ ନେଇ ନିଜକୁ ପ୍ରଗତି ପ୍ରବୀଣ ମାନବିକତାର ପୂଜାରୀ ବୋଲି ଆସ୍ଫାଳନ କରିବା ଏବଂ ଲକ୍ଷ୍ୟ ହାସଲ କରିବା ପାଇଁ ପ୍ରାଣପଣେ ଚେଷ୍ଟା ନ କରିବା ନିଜର ଧୃଷ୍ଟତାର ପରିଚୟ ଦେବା ସଙ୍ଗେ ସଙ୍ଗେ ଦେଶବାସୀ ତଥା ସମଗ୍ର ମାନବ ଜାତିର ପ୍ରଭୂତ କ୍ଷତିସାଧନ କରିବା ହିଁ ସାର୍ଥକ ହେବ । କେତେକ ବ୍ୟକ୍ତିଙ୍କର ଅପରିପକ୍ୱ ଏବଂ ଦୂରଦୃଷ୍ଟିହୀନ କାର୍ଯ୍ୟ ଲାଗି ଗୁରୁତ୍ୱ ହରାଇବ । ସମସ୍ୟାସଂକୁଳ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତର ରାଜନୈତିକ, ଅର୍ଥନୈତିକ ତଥା ସାଂସ୍କୃତିକ ଅଗ୍ରଗତି ଲାଗି ଉପସ୍ଥିତ କୌଣସି ରାଜନୈତିକ ଦଳ ସମର୍ଥ ହେଲା ଭଳି ମନେ ହୁଏ ନାହିଁ । କଂଗ୍ରେସ ତ ପୂର୍ଣ୍ଣମାତ୍ରାରେ ନ୍ୟର୍ଥସ୍ୱାର୍ଥ ପୁଞ୍ଜିପତି, ଏଣୁ ଶୋଷକମାନଙ୍କର କରକବଳିତ—ତାର ପ୍ରଶ୍ନ ଆଦୌ ଉଠୁନାହିଁ । ଗଣତାନ୍ତ୍ରିକ ଉପାୟରେ ଦେଶରେ ଅର୍ଥ-ନୈତିକ ସ୍ୱଚ୍ଛଳତା ଆଣି ସାମ୍ୟବାଦ ପ୍ରତିଷ୍ଠା ଦିଗରେ ଅଗ୍ରଗତି

କରିବା ଆମ ଦେଶର ବର୍ତ୍ତମାନ ସାମାଜିକ ନୈତିକ ଏବଂ ଆର୍ଥିକ ପରିସ୍ଥିତି ଆଦୌ ସହଜସାଧ୍ୟ ନୁହେଁ । ଦେଶର ଜନସାଧାରଣ ବଂଶ-ପରଂପରାକ୍ରମେ ଶ୍ରେଣୀ-ସମାଜ ଦ୍ୱାରା ଏପରିଭାବରେ ପ୍ରଭାବିତ ହୋଇଛନ୍ତି ଯେ ଶ୍ରେଣୀ ପାର୍ଥକ୍ୟ ଏକ ଐଶ୍ୱରିକ କାର୍ଯ୍ୟ ବୋଲି ବିବେଚନା କରୁଛନ୍ତି । ସେମାନଙ୍କର ବାସ୍ତବବୋଧର ସୁଯୋଗ ନେଇ ନାନା ଶ୍ରେଣୀର ନ୍ୟସ୍ତସ୍ୱାର୍ଥ ଲୋକେ ନାନା ପ୍ରତିକ୍ରିୟାମୂଳକ କାର୍ଯ୍ୟାନୁଷ୍ଠାନ କରୁଛନ୍ତି । ଗତ ସାଧାରଣ ନିର୍ବାଚନ ଏହାର ଏକ ଜ୍ୱଳନ୍ତ ଉଦାହରଣ । ଧର୍ମ ନାମରେ, ଜାତି ନାମରେ, ସମ୍ପ୍ରଦାୟ ନାମରେ ଏବଂ ଅନ୍ୟାନ୍ୟ ନାନା ଛଳନାତ୍ମକ ଉପାୟରେ ନିରୀହ ନିରକ୍ଷର ଜନତାକୁ ସେମାନଙ୍କ ସ୍ୱାର୍ଥ-ସାଧନର ବିପରୀତ ଦିଗରେ ପରିଚାଳିତ କଲେ । ଯେଉଁ ଦେଶର ଜନତା ଗଣତନ୍ତ୍ରର ଅର୍ଥ ବୁଝେନା, ଯେଉଁ ଦେଶର ଶୋଷିତ ଜନତା କହେ ଦାରିଦ୍ର୍ୟ ଏକ ଈଶ୍ୱରଦତ୍ତ ଅଭିଶାପ, ଯେଉଁ ଦେଶର ଜନତା ଶୋଷକଗୋଷ୍ଠୀକୁ ଦେବତୁଲ୍ୟ ପୂଜା-କରେ, ସେ ଦେଶରେ ଗଣତାନ୍ତ୍ରିକ ଶାସନ ବା ଗଣତାନ୍ତ୍ରିକ ଉପାୟରେ କ୍ଷମତା ହାସଲର ସ୍ୱପ୍ନ ଧୃଷ୍ଟତା ମାତ୍ର । ଗଣତନ୍ତ୍ର, ସାମ୍ୟବାଦ ଏକ ମାନବିକତାର ଲକ୍ଷ ଲକ୍ଷ ଶ୍ରେଣୀହୀନ ସମାଜ ଯେଉଁଠି ମାନବ, ମାନବରୂପେ ପରିଚିତ; ଯେଉଁଠି ମାନବିକତା, ମୁଦ୍ରା, ଅର୍ଥ ଲାଭ ବା କ୍ଷତିର ଇଙ୍ଗିତରେ ପରିଚାଳିତ ନ ହୋଇ ସାମାଜିକ କଲ୍ୟାଣ ଲାଗି ସତତ ନିୟୋଜିତ ହୋଇଥାଏ, ଯେଉଁଠି ନ୍ୟାୟ, ସତ୍ୟ ଧର୍ମ, ଶିକ୍ଷା, ନୈତିକତା ପ୍ରଭୃତି ମାନବିକ ଦୃଷ୍ଟିକୋଣରୁ ବିଚାର କରାଯାଏ— ସେ ସମାଜ ହାସଲ କେବଳ ଶ୍ରେଣୀ ସଂଘର୍ଷ ଦ୍ୱାରାହିଁ ସମ୍ଭବ । ଭାରତର ବିଭିନ୍ନ ପ୍ରଗତିକାମୀ ବାମପନ୍ଥି ଦଳ ସେହି ଆଦର୍ଶ ସମାଜ ପ୍ରତିଷ୍ଠା ଲାଗି ଶ୍ରେଣୀ ସଂଘର୍ଷର ଆଶ୍ରୟ ନେଇ

ଥାନ୍ତି, ତାହା ସତ୍ୟ; କିନ୍ତୁ ଗଣତାନ୍ତ୍ରିକ ଉପାୟରେ ହେଉ ବା ଧ୍ୱଂସାତ୍ମକ ଉପାୟରେ ହେଉ ଶ୍ରେଣୀ ସଂଘର୍ଷ ପଛରେ ଏକ ଅନୁକୂଳ ବାୟୁମଣ୍ଡଳ ଥିବା ଆବଶ୍ୟକ । ଆମ ଦେଶରେ ଶ୍ରେଣୀ ସଂଘର୍ଷ କ୍ଷିପ୍ର ନ ହେବାର ପ୍ରଧାନ କାରଣ ଏତାଦୃଶ ବାୟୁମଣ୍ଡଳର ଅଭାବ । ଆମ ଦେଶରେ ଜନସାଧାରଣ ଶ୍ରେଣୀ-ପାର୍ଥକ୍ୟର ପ୍ରକୃତ ହେତୁ ବିଷୟରେ ଅନଭିଜ୍ଞ । ଶ୍ରେଣୀ-ଚେତନା ବା ଶ୍ରେଣୀ ଜାଗରଣ ତ ଦୂରର କଥା; ରାଜନୀତି କହିଲେ ଆମ ଦେଶର ଲୋକେ ଗୋଟିଏ ଦଳଗତ ମନୋବୃତ୍ତି ବୋଲି ବିଚାରନ୍ତି । ଶିକ୍ଷିତ, ଅଶିକ୍ଷିତ ନିର୍ବିଶେଷରେ ବିଭିନ୍ନ ରାଜନୈତିକ ଦଳକୁ ଶୋଷଣର ପନ୍ଥା ବୋଲି ବିଚାରନ୍ତି । ସେମାନଙ୍କର ଧାରଣା, ରାଜନୀତି ଯେଉଁ ବ୍ୟକ୍ତିମାନଙ୍କ ଜୀବନର ଅବଲମ୍ବନ ସେମାନେ ଅତି ନିମ୍ନସ୍ତରର ଲୋକ । ସେମାନଙ୍କ ଅଜ୍ଞତା ଲାଗି ସେମାନଙ୍କୁ କ୍ଷମା ଦେବା ବ୍ୟତୀତ ଅନ୍ୟ କିଛି ନାହିଁ । ସେମାନଙ୍କର ଦୃଷ୍ଟି-ପରିସର ଅତି କ୍ଷୁଦ୍ର, ଆତ୍ମ-ଆସ୍ଥା ବା ବିଶ୍ୱାସ ଅତି କ୍ଷୀଣ । ଶିକ୍ଷା ବାସ୍ତବତା ଶୂନ୍ୟ, ସେମାନଙ୍କର ମନେରଖିଥିବା ଉଚିତ ଯେ ରାଜନୀତି ଏକ ଅତ୍ୟାବଶ୍ୟକ ସାମାଜିକ ଅନୁଷ୍ଠାନ । ରାଜନୀତି ବିଷୟରେ ଆଲୋଚନା ନ କରିବା ଅର୍ଥ ନିଜ ବିଷୟରେ ଆଲୋଚନା ନ କରିବା, ତେଣୁ ନିଜକୁ ମନୁଷ୍ୟ ବୋଲି ଦାବୀ କରିବାର ଅଧିକାର ହରାଇବା । ଯେଉଁ ଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ଏପରି ଶୋଚନୀୟ, ସେ ଦେଶରେ ନେତାମାନଙ୍କର କର୍ତ୍ତବ୍ୟ ସେହିପରି ଗୁରୁତର । ଆମର ନେତାମାନେ ଦେଶସମ୍ମୁଖରେ ଏବଂ କର୍ମୀମାନଙ୍କ ମଧ୍ୟରେ ଆଦର୍ଶ ଓ ଅଭ୍ୟାସର ଏକ ସୌଷ୍ଠବ ଏବଂ ସଂଶ୍ଳିଷ୍ଟ ପ୍ରତିମୂର୍ତ୍ତିରୂପେ ନିଜକୁ ପ୍ରତିଷ୍ଠିତ କରିବା ଏକାନ୍ତ ଆବଶ୍ୟକ । କଳୁଷିତ ସମାଜରେ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱର ଉଦାହରଣ ନିଜ ଜୀବନରେ ଦେଇପାରିଲେ

ବାସ୍ତବ ନେତୃତ୍ୱର ପରିଚୟ ମିଳେ । ନେତାଙ୍କର କଠିନ ପରିଶ୍ରମ କରିବାର ଶକ୍ତି, ସାହସ ବା ଧୈର୍ଯ୍ୟ କର୍ମୀମାନଙ୍କଠାରୁ ଅଧିକ ପରିମାଣରେ ଥିବା ଯେପରି ଆବଶ୍ୟକ, ମାନସିକ ସମୃଦ୍ଧି ଯୋଜନାତ୍ମକ ପ୍ରତିଭା ଏବଂ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ବିଚକ୍ଷଣତା ଥିବା ମଧ୍ୟ ଅତ୍ୟନ୍ତ ଆବଶ୍ୟକ । କିନ୍ତୁ ବର୍ତ୍ତମାନ ଭାରତର ପ୍ରତ୍ୟେକ ରାଜନୈତିକ ଦଳରେ ଏପରି ଆଦର୍ଶ ସ୍ଥାନୀୟ ନେତା କୌଣସି ରାଜନୈତିକ ଦଳରେ ଦେଖିବାକୁ ମିଳନ୍ତି ନାହିଁ । ପ୍ରକୃତ ନେତା ଅଭାବରୁ ଅଗ୍ରଗତି ଅସମ୍ଭବ; ତେଣୁ କୌଣସି ରାଜ୍ୟନୈତିକ ଦଳ ଆଶାନୁରୂପ ଅଗ୍ରଗତି କରି ପାରୁ ନାହାନ୍ତି । ପ୍ରତ୍ୟେକ ରାଜନୈତିକ ଦଳରେ ନେତା ଏବଂ କର୍ମୀମାନଙ୍କ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସେମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ନ ରହିଲେ, ସମସ୍ତେ ଏକ ପରିବାରଭୁକ୍ତ ବୋଲି ଭ୍ରାତୃତ୍ୱରେ ଉଦ୍‌ବୁଦ୍ଧ ନ ହେଲେ ପ୍ରତ୍ୟେକଙ୍କ ମଧ୍ୟରେ ସାହାଯ୍ୟ, ସହାନୁଭୂତି ଏବଂ ସୌହାର୍ଦ୍ଦ୍ୟ ନ ରହିଲେ ସମ୍ମିଳିତ ଉଦ୍ୟମ ପୂର୍ଣ୍ଣାଙ୍ଗ ହୋଇପାରେ ନାହିଁ । ଏହା ବ୍ୟତୀତ ସାଧାରଣ ଜନତା ସହିତ ମଧ୍ୟ ରାଜନୈତିକ ଦଳର କର୍ମକର୍ତ୍ତା ଏବଂ କର୍ମୀମାନଙ୍କ ମଧ୍ୟରେ ମଧୁର ସମ୍ପର୍କ ରହିବା ଏକାନ୍ତ ଆବଶ୍ୟକ । ସେମାନଙ୍କ ଉପରେ ଦେଶବାସୀଙ୍କର ଯଥେଷ୍ଟ ଆସ୍ଥା ଏବଂ ବିଶ୍ୱାସ ରହିବା କଥା—କିନ୍ତୁ ଶ୍ରମିକମାନଙ୍କୁ ଆତ୍ମ-ନିୟନ୍ତ୍ରଣ ଏବଂ ଅଧିକାରବୋଧ ଦିଗରେ ଅଗ୍ରଗତ କରାଇବାକୁ ହେଲେ ନେତାଙ୍କୁ ଶ୍ରମିକମାନଙ୍କ ପରି ଜୀବନ ଯାପନ କରିବାକୁ ହେବ । ସେ ମଧ୍ୟ ଶ୍ରମିକମାନଙ୍କ ପରି କଠିନ ପରିଶ୍ରମକୁ ଜୀବନର ଶ୍ରେଷ୍ଠ ଅବଲମ୍ବନ ବୋଲି ଧରି ନେବାକୁ ହେବ । ତା ନ ହେଲେ ନେତାଙ୍କର ବାସ୍ତବ ବ୍ୟକ୍ତିତ୍ୱ ବିଷୟରେ ପରିଚାଳକମାନଙ୍କର ହୃଦ୍‌ବୋଧ ହେଲେ ପ୍ରକୃତ ସାମାଜିକ ପ୍ରଗତି ସମ୍ଭବ ହୋଇ ପାରିବ ।

ଯେଉଁମାନେ ସାମୂହିକ ପରିବର୍ତ୍ତନ କରିବାକୁ ଚାହାନ୍ତି, ସେମାନେ କେବଳ ରାଜନୈତିକ ପରିସ୍ଥିତି ବା ରାଜନୈତିକ ସୁଯୋଗକୁ ଅପେକ୍ଷା କଲେ କଦାପି ଲକ୍ଷ୍ୟ ହାସଲ କରି ପାରିବେ ନାହିଁ କିମ୍ବା କେବଳ ଅର୍ଥନୈତିକ ପରିବର୍ତ୍ତନ ଆଣିଲେ ବାସ୍ତବ ମାନବିକତାର ପୂର୍ଣ୍ଣାଙ୍ଗ ପ୍ରତିଷ୍ଠା ହୋଇପାରିବ ନାହିଁ । ସେଥିଲାଗି ଧର୍ମ, ରାଜନୀତି, ଶିକ୍ଷା, ନୈତିକତା ପ୍ରଭୃତି ପ୍ରତ୍ୟେକ ସାମାଜିକ ଅନୁଷ୍ଠାନର ମାନବିକ ଦୃଷ୍ଟିକୋଣରୁ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ସାହିତ୍ୟ, କଳା ଏବଂ ସଙ୍ଗୀତ ପ୍ରଭୃତି ସଂସ୍କୃତିଗତ ବିଷୟମାନଙ୍କର ମଧ୍ୟ ପରିବର୍ତ୍ତନ ଆବଶ୍ୟକ । ମନୁଷ୍ୟର ବ୍ୟକ୍ତିତ୍ୱର ପରିବର୍ତ୍ତନ ମଧ୍ୟ ସର୍ବାଦୌ ଆବଶ୍ୟକ । ସେମାନେ କେବଳ ରାଜନୈତିକ ସୁବିଧାର ସୁଯୋଗକୁ ଅପେକ୍ଷା ନ କରି କେବଳ ଅର୍ଥନୈତିକ ସମସ୍ୟାର ସମାଧାନଲାଗି ନାନା ଆନ୍ଦୋଳନ ପାଇଁ ଅପେକ୍ଷା ନ କରି ପ୍ରତ୍ୟେକ ସାମାଜିକ କ୍ଷେତ୍ରରେ ବୈପ୍ଳବିକ ଚିନ୍ତାଧାରା ସୃଷ୍ଟି କରିପାରିଲେ ଶ୍ରେଣୀହୀନ ସମାଜ ହାସଲ ଦିଗରେ କୃତକାର୍ଯ୍ୟ ହୋଇ ପାରିବେ । ସେଥିପାଇଁ ଶ୍ରେଣୀହୀନ ସମାଜପ୍ରୟାଣୀ ପ୍ରଗତିଶୀଳ ରାଜନୈତିକ ଦଳମାନଙ୍କର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ—ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନେଇ ଆଦର୍ଶସାଧନ ଦିଗରେ ସମ୍ମିଳିତ ଚେଷ୍ଟା ଏବଂ ସମବେତ କର୍ମଯୋଜନା । ଲକ୍ଷ୍ୟ ସାଧନ ଲାଗି ବିଭିନ୍ନ ପନ୍ଥା ଅନୁସରଣ କରୁଥିବା ନାନା ରାଜନୈତିକ ଦଳ କେବଳ ଉପାୟ ଅବଲମ୍ବନ ଲାଗି ଉଦ୍ଦେଶ୍ୟକୁ ଭୁଲିଗଲେ ବାସ୍ତବ ପ୍ରଗତି ଅସମ୍ଭବ । ଯଦି ଜନକଲ୍ୟାଣ ସେମାନଙ୍କର ଚରମ ଉଦ୍ଦେଶ୍ୟ ହୁଏ ଏବଂ ଯଦି ସତ୍-ଉଦ୍ଦେଶ୍ୟ ସାଧନର ପରାକାଷ୍ଠା ଦେଇଥାଏ, ଆତ୍ମ-ଆସ୍ଥା ତା' ହେଲେ ଅନ୍ୟ ଦଳ ବା ଅନ୍ୟ ନେତାଙ୍କର ଦ୍ୱାରା ପ୍ରଭାବିତ ହୋଇ ନିଜ ଲକ୍ଷ୍ୟ ଭୁଲିଯିବାର ପ୍ରଶ୍ନ ଅତ୍ୟନ୍ତ ଅବାନ୍ତର । ଆମେ

ଉଦ୍ଦେଶ୍ୟ ଏବଂ ଉପାୟ ଉଭୟଙ୍କୁ ଆବଶ୍ୟକୀୟ ଗୁରୁତା ନ ଦେଇ ଉପାୟ ବେଦୀରେ ଉଦ୍ଦେଶ୍ୟକୁ ବଳିଦେଲେ ଅଗ୍ରଗତି ଅତୀବ ଅସମ୍ଭବ । ସେଥିଲାଗି ଭାରତର ସମସ୍ତ ପ୍ରଗତିଶୀଳ ରାଜନୈତିକ ଦଳ ଯେଉଁମାନେ ସାମ୍ୟବାଦ ଗଣତନ୍ତ୍ର ମାନବିକତା ଭିତ୍ତିରେ ସାମାଜିକ ଜୀବନର ନିୟନ୍ତ୍ରଣ କରିବାକୁ ଚାହାନ୍ତି—ତାହେଲେ ସମସ୍ତ ପ୍ରକାର କାର୍ଯ୍ୟ ଆଭ୍ୟନ୍ତରୀଣ ଭେଦଭାବକୁ ଭୁଲିଯାଇ ଶ୍ରେଣୀ ସମାଜର ଧ୍ୱଂସ ସେମାନଙ୍କର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ଧରିବା ସଙ୍ଗେ ସଙ୍ଗେ ଶ୍ରେଣୀହୀନ ସମାଜ ପ୍ରତିଷ୍ଠାଲାଗି ସେମାନଙ୍କର ସମସ୍ତ ଶକ୍ତି ସାମର୍ଥ୍ୟ ତଥା ପ୍ରାଣ ନିୟୋଜିତ କରନ୍ତୁ ।

